

ଛୋଟିଆରୁ ଛୋଟିଆ ଘାଅରେ ବି ଧୂଳି ଲାଗିପାରେ, ଯଦ୍ୱାରା ଘାଅ ସଂକ୍ରମିତ ହୋଇପାରେ, ଅସୁବିଧା କରିପାରେ ।

# ତୁରନ୍ତ, ବ୍ୟାଣ୍ଡ-ଏଡ୍ ଲଗାନ୍ତୁ




ବ୍ୟାଣ୍ଡ-ଏଡ୍
ସଂରକ୍ଷଣ ଉନ୍ନତତର । ଶୁଖାଏ ଦ୍ରୁତତର ।

*Johnson & Johnson*

ସତେଜତାର ଅନୁଭୂତି ପାଇଁ ପ୍ରେମ୍

ଆପଣଙ୍କ ମନପ୍ରାଣରେ କୋମଳ ସ୍ପର୍ଶ
ଛୁଆଁଇ ଦିଏ ଏହି ସାବୁନ...
ଏହାର ସୁଗନ୍ଧ ବହୁ ସମୟ ଧରି ଆପଣଙ୍କୁ ଘେରି ରହେ ।
ଅପୂର୍ବ ଏହାର ଫେଣ ଛଳ ଛଳ ହୋଇ ଭରି ଉଠେ ।
ଅଭ୍ୟାସ କରି ପ୍ରତିଦିନ ବ୍ୟବହାର କରନ୍ତୁ ପ୍ରେମ ।




ଗୋଲାପୀ ଓ
ସବୁଜ ରଙ୍ଗରେ
ଉପଲବ୍ଧ ।








ଜୟଲକ୍ଷ୍ମୀ
ଉତ୍ପାଦନ
ଗୁଣ୍ଟୁର



# ଜହ୍ନମାମୁଁ

ମେ ୧୯୮୫



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୦୦

ବାର୍ଷିକ ମୂଲ୍ୟ : ୨୪-୦୦

# ଆମେ ଏକାଠି
# ନେଉଛୁ
# କାମ୍ପାର ମଜା




ସ୍ୱାଦ ମଉଜ ମଧୁର
କାମ୍ପା ଅରେଞ୍ଜ ଫ୍ଲେବର

ଫଳ ମଣ୍ଡ ବିହୀନ କୃତ୍ରିମ ସ୍ୱାଦଯୁକ୍ତ ଫଳ ରସ ।

OBM/5361

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

ଏ ସଂଖ୍ୟାରେ ଆମେ ପରିବେଷଣ କରୁଛୁଁ ଏକ ବିଶେଷ କାହାଣୀ : "ନର୍ତ୍ତକ ଛାଗଳ"। କାହାଣୀଟି ଯେତିକି ଶିକ୍ଷାପ୍ରଦ, ସେତିକି କରୁଣ । ମଣିଷ ନିଜକୁ ଖୁବ୍ ବୁଦ୍ଧିମାନ ମନେ କରିପାରେ, କିନ୍ତୁ କେତେବେଳେ କେଉଁ ଦିଗରୁ ଯେ ଧକ୍କା ଆସିବ, ସେକଥା ସେ କଳ୍ପନା କରି ପାରିବ ନାହିଁ ।

## ଅମରବାଣୀ

କୃତସ୍ୟ କରଣଂ ନାସ୍ତି ମୃତସ୍ୟ ମରଣଂ ତଥା ।
ଗତସ୍ୟ ଶୋଚନଂ ନାସ୍ତି ହ୍ୟେତଦ୍‌ବେଦବିଦାଂମତମ୍ ॥

[ଯିଏ ମୃତ ତା'ର ଯେପରି ମରଣ ନଥାଏ, ସେହିପରି ସମାପ୍ତ କାର୍ଯ୍ୟ ପୁଣି କରିବାର ନଥାଏ । ସେହିପରି ଯାହା ଗତ, ସେପାଇଁ ଶୋଚନା କରି ଲାଭ ନାହିଁ । ଏହା ବିଜ୍ଞମାନଙ୍କ ମତ ।]

ବର୍ଷ : ୯ ମେ ୧୯୮୫ ଅଙ୍କ : ୧୧

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦





# ସହାନୁଭୂତି

ପ୍ରକାଶର ଶିକ୍ଷା ସମାପ୍ତ ହେବା ପରେ ବନା କଷ୍ଟରେ ସେ ସହରରେ ଭଲ ଚାକିରିଟିଏ ପାଇଲା । ଗ୍ରାମରୁ ପରିବାରଙ୍କୁ ନେଇ ସହରରେ ଘର ଭଡ଼ା ନେଇ ରହିଲା । ପ୍ରତିଦିନ ସେ ଗାଡ଼ିଟିଏ ଭଡ଼ା କରି କାର୍ଯ୍ୟାଳୟକୁ ଯାଏ ।

ବୁଢ଼ାବୁଢ଼ୀମାନଙ୍କ ପ୍ରତି ପ୍ରକାଶ ହୃଦୟରେ ସର୍ବଦା ସହାନୁଭୂତି ଥାଏ । ଯେଉଁ ଗାଡିରେ ପ୍ରତିଦିନ ସେ ଯାଏ ସେଇ ଗାଡ଼ିର ଚାଳକ ନଟକୁ ସେ ମାସକୁ ପଚାଶ ଟଙ୍କା ଦିଏ । ଗାଡ଼ିରେ ଯିବାବେଳେ ସେ ନଟକୁ ପଚାରେ, "ଆଛା ନଟ, ତୁମର ଦୁଇ ପୁଅ ଯୋଗ୍ୟ । ତମେ କାହିଁକି କଷ୍ଟକରି ଗାଡି ଚଳାଉଛ ?"

ନଟ ହସି ହସି କହେ, "ବାବୁ, ମୋ ପୁଅମାନଙ୍କର ଅର୍ଜିତ ଧନ ମୋତେ ପରର ଧନ ପରି ଲାଗେ । ଯେତେଦିନ ଶରୀରରେ ଶକ୍ତି ଅଛି ସେତେଦିନ ନିଜ ଖର୍ଚ୍ଚ ନିଜେ ରୋଜଗାର କରିବା ଦ୍ୱାରା ମୋତେ ଆତ୍ମସନ୍ତୋଷ ମିଳୁଛି ।"

ପ୍ରକାଶର ପିତା ନିଜେ କଷ୍ଟ ସହି ପ୍ରକାଶକୁ ସହରରେ ପଢ଼ାଇଥିଲେ । ସେ କେବେ କେବେ ଏକଥା କହି ମନଦୁଃଖ କଲେ ତା'ର ପିତା ବରାବର କହୁଥା'ନ୍ତି, "ପୁଅ, ତୁ ଯେବେ ପ୍ରଢସାର ଚାକିରି କରିବୁ ତେବେ ଯାଇ ମୁଁ ସବୁ କାମ ଛାଡ଼ି ଘରେ ଆରାମରେ ବସିବି ।"

ପ୍ରକାଶର ପାଠପଢ଼ା ଶେଷ ହେଲା । ସେ ଚାକିରି ପାଇବା ଅଳ୍ପଦିନ ପୂର୍ବରୁ ତା'ର ପିତାଙ୍କର ହଠାତ୍ ଦେହ ଖରାପ ହୋଇ ବିଛଣା ଧରିଲେ ଓ ଦୁଇ ଚାରିଦିନ ପରେ ତାଙ୍କର ମୃତ୍ୟୁ ହେଲା । ପ୍ରକାଶ ମନରେ ଦୁଃଖ ରହିଗଲା ଯେ ସେ ତା' ପିତାଙ୍କୁ କିଛିଦିନ ପାଇଁ ସୁଦ୍ଧା ଆରାମରେ ରଖି ପାରିଲା ନାହିଁ ।

ସମରେନ୍ଦ୍ର




ବିକାଶ ଯେଉଁ ରାସ୍ତା ଦେଇ କାମ କରିବାକୁ ଯାଉଥିଲା ସେଇ ରାସ୍ତାରେ ଏକ ଚଉମୁହାଣି ଛକରେ ବୁଢ଼ାଟିଏ ଛୋଟ ଟୋକେଇଟିରେ ଗୁଡ଼ିଏ ପକୁଡ଼ି ପିଆଜି ଧରି ବିକୁଥାଏ । ସାରା ଦିନର ଖରା ବର୍ଷା ତା' ମୁଣ୍ଡ ଉପରେ ଯାଏ । ବିକାଶର ମନ ଦୁଃଖ ଓ ଦୟାରେ ଭରିଯାଏ ।

ଥରେ ଦଶଦିନ ଧରି ଆଉ ବୁଢ଼ାକୁ ଦେଖିବାକୁ ମିଳିଲା ନାହିଁ । ବିକାଶ ଭାବିଲା ବୋଧହୁଏ ବୁଢ଼ା ମରିଗଲା । କିନ୍ତୁ ପରଦିନ ସେ ଦେଖିଲା ବୁଢ଼ା ପୁଣି ତା'ର ପକୋଡ଼ି ଓ ପିଆଜିର ପାଛିଆଟି ଧରି ବସିଛି ।

ସେ ଗାଡ଼ି ବନ୍ଦ କରି ପଚାରିଲା, "ମଉସା, ଦଶଦିନ ହେବ କୁଆଡ଼େ ଯାଇଥିଲ କି ?"

ଜଣେ ଅଜଣା ଲୋକ ଏପରି ଘନିଷ୍ଠ ବନ୍ଧୁ ପରି ପ୍ରଶ୍ନ ପଚାରୁଛି ଦେଖି ବୁଢ଼ା ଅଳ୍ପ ହସି କହିଲା, "ବାବୁ, ମୁଁ ଏଠି ବସିବାର ଆପଣ ତେବେ ପ୍ରତିଦିନ ଲକ୍ଷ୍ୟ ରଖନ୍ତି । କଥା କ'ଣ କି ମୋତେ ବହୁତ ଜ୍ୱର ହୋଇ ଯାଇଥିଲା । ମୁଁ ମୃତ୍ୟୁ ମୁଖରୁ ପୁଣି ଖସି ଆସିଛି ।"

ବୁଢ଼ାର କଥା ଶୁଣି ବିକାଶ ଦୟାରେ ବିଚଳିତ ହୋଇ ପଚାରିଲା, "ଆଚ୍ଛା ଏ ସବୁ ବିକିଲେ ତୁମକୁ କେତେ ଟଙ୍କା ମିଳିବ ?"

"ଚାରିଟଙ୍କା ମିଳିବ । ମୋର ଟଙ୍କାଏ ମାତ୍ର ଲାଭ ରହିବ ।" ବୁଢ଼ା କହିଲା ।

"ତମେ ଏ ସମସ୍ତ ଜିନିଷ ମୋତେ ଦେଇଦିଅ । ମୁଁ ପାଞ୍ଚଟଙ୍କା ଦେଉଛି ।"

ବୁଢ଼ା ଟିକିଏ ଆଶ୍ଚର୍ଯ୍ୟ ହେଲା । ତା'ପରେ ସମସ୍ତ ଜିନିଷ ନେଇ ଗାଡିରେ ରଖିଦେଲା ଓ ଖୁସି ମନରେ ପାଞ୍ଚଟଙ୍କା ଧରି ଘରକୁ ଗଲା ।

ଆସୁ ଆସୁ ବାଟରେ ନଟ ପଚାରିଲା, "ବାବୁ, ଏସବୁ ନେଇ ଆପଣ କ'ଣ କରିବେ ?"

"ତମେ ନେଇଯାଅ, ନିଜେ କିଛି ଖାଇବ ଓ ଯାହା ବଳିବ ପଡ଼ୋଶୀମାନଙ୍କୁ ବାଣ୍ଟି ଦେବ ।" ବିକାଶ କହିଲା ।

ପରଦିନ ମଧ୍ୟ ଗାଡ଼ି ଛକ ପାଖକୁ ଆସିବାରୁ ବିକାଶ ପୁଣି ସେହିପରି କଲା । ତୃତୀୟ ଦିନ ଯେତେବେଳେ ବିକାଶ ଗାଡ଼ି ବନ୍ଦ କରିବାକୁ କହିଲା, ନଟ କହିଲା, "ବାବୁ, ଆପଣ ଏପରି କେତେଦିନ କରି ପାରିବେ ?"

"ଯେତେଦିନ ବିଚାର ବୁଢ଼ା ବଞ୍ଚି ରହିଥିବ !"

ବିକାଶ ଗାଡ଼ିରୁ ଓହ୍ଲାଇ ବୁଢ଼ା ପାଖକୁ ଯିବା ମାତ୍ରେ ବୁଢ଼ା ହାତ ଯୋଡ଼ି କହିଲା, "ବାବୁ ମୋର ସବୁ ଜିନିଷ ଆପଣ ନେଇ ମୋତେ ଆଉ ଲଜ୍ଜା ଦିଅନ୍ତୁ ନାହିଁ । ଆପଣଙ୍କର ଅନୁଗ୍ରହ ମୁଁ କେବେ ମଧ୍ୟ ଭୁଲି ପାରିବି ନାହିଁ । କିନ୍ତୁ ମୁଁ ଶୀଘ୍ର ଘରକୁ ଫେରିଯାଇ ଆରାମ କରିବା ଦେଖି ପୁଅ କିଛି ନା କିଛି ଅଧିକା କାମ ଦେଉଛି । କାଲି ସାରାଦିନ କାଠ ଚିରିଛି ।"

ବୁଢ଼ାର ଉତ୍ତର ଶୁଣି ବିକାଶର ମନଟା ଦୁଃଖରେ ଭରି ଉଠିଲା ।

ସଙ୍ଗେ ସଙ୍ଗେ ବିକାଶ ମନ ମଧ୍ୟରେ ଠିକ୍ କରି ନେଲା କି ବୁଢ଼ାକୁ ଘରକୁ ନେଇଯିବ । ତାହେଲେ ବୁଢ଼ାର ପୁଅର ଅନ୍ତତଃ କିଛି ଶିକ୍ଷା ହେବ । ତେଣୁ ସେ ବୁଢ଼ାକୁ ପଚାରିଲା, "ମଉସା, ଆମ ଘରକୁ ଯିବ ? ସେଠି ତମର ଖିଆପିଆରେ କିଛି ଅସୁବିଧା ହେବ ନାହିଁ ।"

ବୁଢ଼ା କିଛି ସମୟ ଚୁପ୍ ରହି କହିଲା, "ବାବୁ, ମୁଁ ତ ଅତି ଖୁସିରେ ଯିବି । କିନ୍ତୁ ମୋ ପୁଅ ମାନିବ ନାହିଁ ଓ ସେ ଆପଣଙ୍କ ସହିତ ଝଗଡ଼ା କରିବ ।"

"ତମେ ସେକଥା ଚିନ୍ତା କରନାହିଁ । ଗାଡ଼ି ଭିତରକୁ ଚାଲ ।" ବିକାଶ ବୁଢ଼ାର ହାତ ଧରି ଗାଡ଼ିରେ ବସାଇ ନେଇଗଲା ।

ବୁଢ଼ାର ପୁଅ ଏଣେ ବାପ ନ ଫେରିବାରୁ ଟିକିଏ ଚିନ୍ତିତ ହେଲା । ତା'ପରେ ଚାରିଆଡ଼େ



ପଚାରି ଘଟଣା କ'ଣ ବୁଝିଲା ଓ ପରଦିନ ଯାଇ ବିକାଶର ଘରେ ପହଞ୍ଚିଲା ।

ବିକାଶ ସହିତ ବୁଢ଼ାର ପୁଅ କଥାବାର୍ତ୍ତା କଲା । ବିକାଶ ବୁଝାଇବାକୁ ଚେଷ୍ଟା କଲା ଯେ ବୁଢ଼ା କିପରି ସାରା ଦିନ ଗୋଟାଏ ଜାଗାରେ ବସି ଖରାବର୍ଷା ସହି ବିକୁଥାଏ । ଏ ବୟସରେ ସେଇଟା ବହୁତ କଷ୍ଟ କାମ । ତା'ର ଆଦୌ କାମ କରିବା କଥା ନୁହେଁ ବରଂ ଆରାମ କରିବା କଥା । ବିକାଶ କହିଲା, "ଏ ବୁଢ଼ା ବୟସରେ ତୁମ ବାପକୁ ସୁଖ ଆରାମରେ ନରଖି ଓଲଟା ତାଙ୍କ ରୋଜଗାରକୁ ଆହୁରି ଆଶା ରଖି ବସିଛ? ଏଇଟା ତ ନିହାତି ଅନ୍ୟାୟ ଓ ନିଷ୍ଠୁରତା ମଧ୍ୟ ।"

ବୁଢ଼ାର ପୁଅ ସଙ୍କୋଚର ସହିତ କହିଲା, "ବାବୁ, ମୁଁ ଏତେ ସ୍ୱାର୍ଥପର ନୁହେଁ । ମୋ ବାପା ଯାହା ରୋଜଗାର କରନ୍ତି ମୁଁ ତାଙ୍କର ଖାଇବା ପିଇବାରେହିଁ ଖର୍ଚ୍ଚ କରେ ।"

"ଠିକ୍ ଅଛି । ମୁଁ ତୁମ ବାପାଙ୍କୁ ମୋ ଘରେ ରଖିବି । ତାଙ୍କ ଖାଇବା ପିଇବା ଖର୍ଚ୍ଚ ମୁଁ ତୁଲାଇବି । ତୁମର ସେଥିରେ ଚିନ୍ତା ନ ହେବାର କାରଣ କିଛି ନାହିଁ ।" ବିକାଶ ପଚାରିଲା ।

ବୁଢ଼ାର ପୁଅ ତା' ବାପାର ଚେହେରା ଦେଖି ଲଜ୍ଜିତ ହେଲା । ସେ ଲଜ୍ଜାରେ ମୁଣ୍ଡ ତଳକୁ କଲା । ଏସବୁ ଦେଖି ବିକାଶ କହିଲା, "ମୁଁ ଜାଣେ ଯେ ଏଇ ବୁଢ଼ା ବୟସରେ ସେ ତୁମ ଘରେ ରହିବାଟା ନ୍ୟାୟସଙ୍ଗତ । ଏଠାରେ ରହିବା ହୁଏତ ତୁମ ପାଇଁ ଅସୁନ୍ଦର । କିନ୍ତୁ ତା' ବୋଲି ତୁମେ ତାଙ୍କ ସହିତ ଚାକର ପରି ବ୍ୟବହାର କରିବା ଉଚିତ୍ ନୁହେଁ ।"

ବୁଢ଼ାର ପୁଅ ଆଖିରେ ଲୁହ ଆସିଗଲା । ସେ ନିଜ ଭୁଲ୍ ବୁଝିପାରି ଅନୁତାପ କଲା । ସେ ହାତଯୋଡ଼ି ବିକାଶଙ୍କୁ କୃତଜ୍ଞତା ସହିତ ନମସ୍କାର କଲା ଓ ନିଜ ବାପକୁ କହିଲା, "ବାପା, ଏବେ ଚାଲ ଘରକୁ ଯିବା; ମୋ ଆଖି ଖୋଲି ଯାଇଛି । ଆଉ ସେପରି ଭୁଲ୍ ଓ ମୂର୍ଖତା ମୁଁ କେବେ କରିବି ନାହିଁ ।" ତା'ପରେ ସେ ବିକାଶଠାରୁ ବିଦାୟ ନେଇ ବାପର ହାତ ଧରି ଚାଲିଗଲା ।






[ ୪ ]

[ଚନ୍ଦ୍ରବର୍ମା ନିଜ ସେନାପତି ଧୀରମଲ୍ଲଙ୍କୁ ସାଥିରେ ଧରି ଦୁର୍ଗ ପରିସର ଭିତରେ ପଶି ଲୁଣ୍ଠନ ଚଳାଇଥିବା ଶତ୍ରୁମାନଙ୍କୁ ଆକ୍ରମଣ କଲେ । କିନ୍ତୁ ଅଳ୍ପ ସମୟ ଭିତରେ ଦଳେ ନୂଆ ସୈନ୍ୟ ଧରି ସର୍ପକେତୁ ଆସି ସେଠାରେ ପହଞ୍ଚିଗଲା । ଚନ୍ଦ୍ରବର୍ମା, ସୁବାହୁ ଓ ଧୀରମଲ୍ଲ ଯାଇ ଦେଖିଲେ ଶତ୍ରୁପକ୍ଷ ରାଜମହଲର କବାଟ ଭାଙ୍ଗିବା ନିମନ୍ତେ ଚେଷ୍ଟା କରୁଛନ୍ତି । ଚନ୍ଦ୍ରବର୍ମା ହଠାତ୍ ସେମାନଙ୍କୁ ଆକ୍ରମଣ କଲେ । ତା'ପରେ—]

ଚନ୍ଦ୍ରବର୍ମା ଏବଂ ସର୍ପକେତୁର ସୈନିକମାନଙ୍କ ଭିତରେ ପ୍ରାସାଦର ପ୍ରବେଶ ତୋରଣ ପାଖରେ ପ୍ରବଳ ଲଢ଼େଇ ହେଲା । ସଂଖ୍ୟା ଦୃଷ୍ଟିରୁ ସର୍ପକେତୁର ସୈନ୍ୟଦଳ ଚନ୍ଦ୍ରବର୍ମାଙ୍କ ସୈନ୍ୟଙ୍କ ତୁଳନାରେ ଗୃଣ ପାଞ୍ଚଗୁଣ ଅଧିକ ଥିଲେ । ତଥାପି ଚନ୍ଦ୍ରବର୍ମାଙ୍କ ଆକ୍ରମଣର ସମ୍ମୁଖୀନ ହେବା ସେମାନଙ୍କ ପକ୍ଷରେ ସହଜ ହେଲା ନାହିଁ । ସେମାନଙ୍କର କେତେଜଣ ଦଳପତି ଚିତ୍କାର କରି ସେମାନଙ୍କୁ କହିଲେ, "ଚନ୍ଦ୍ରବର୍ମାଙ୍କ ସୈନ୍ୟସଂଖ୍ୟା ଅତି କମ । ଭୟ ନାହିଁ । ଆମର ବିଜୟ ନିଶ୍ଚିତ ! ଦଳପତି ଆଶା କରୁଥିଲେ ତାଙ୍କର ଏଭଳି ଘୋଷଣାରେ ତାଙ୍କ ସୈନ୍ୟମାନେ ଉତ୍ସାହ ପାଇବେ । କିନ୍ତୁ ସେତେବେଳକୁ ସେମାନେ



ମାଡ଼ ଖାଇ ଏପରି ହାଲିଆ ହୋଇ ଯାଇଥାନ୍ତି ଯେ ଦଳପତିଙ୍କ ଘୋଷଣା ସେମାନେ ଶୁଣି ମଧ୍ୟ ଶୁଣି ପାଇଲେ ନାହିଁ କହିଲେ ଚଳେ । ଦଳପତି କଣ୍ଠସ୍ୱର ଆହୁରି ଚଡ଼ା କରି ତାଙ୍କ ଘୋଷଣାର ପୁନରାବୃତ୍ତି କଲେ ।" ସେଥିରେ କିଛି ଫଳ ହେଲା ।

ଅନେକ ବେଳ ଯାଏ ଘମାଘୋଟ ଲଢ଼େଇ ଚାଲିଲା । ଚନ୍ଦ୍ରବର୍ମା ଅନେକ ଚେଷ୍ଟା କରି ମଧ୍ୟ ପ୍ରାସାଦର ଦ୍ୱାର ପାଖକୁ ଯାଇପାରୁ ନଥାନ୍ତି । ପୁଣି ସେତିକିବେଳେ ପ୍ରାସାଦ ଦ୍ୱାରଠାରୁ ଅଦୂରରେ ଅବସ୍ଥିତ ଦୁର୍ଗ ଦ୍ୱାର ପାଖରେ ଘୋଡ଼ାଙ୍କ ଟାପୁଶବ୍ଦ ଶୁଭିଲା । ସୁବାହୁ ଗୋଟାଏ ଘୋଡ଼ା ଚଢ଼ି ଆସି ତାଙ୍କୁ କହିଲେ, "ଯୁବରାଜ, ଆହୁରି ଗୋଟାଏ ବିପଦ ଆମ ଆଗକୁ ମାଡି ଆସୁଛି । ସର୍ପକେତୁ ଆମକୁ ପଛପଟରୁ ଆକ୍ରମଣ କରିବା ନିମନ୍ତେ ଦଳେ ଘୋଡ଼ସବାର ଧରି ଅଗ୍ରସର ହେଉଛି । ଆମେ ଯଦି ଲଢ଼େଇ ଚାଲୁ ରଖିବୁ, ତେବେ ଦୁଇ ଚକି ମଝିରେ ଚାଉଳ ପେଷି ହୋଇ ଗୁଣ୍ଡ ହେଲାଭଳି ହେବ ଆମର ଅବସ୍ଥା । ତେଣୁ ଆମକୁ ସାବଧାନ ହୋଇ ଆମ କର୍ତ୍ତବ୍ୟ ସ୍ଥିର କରିବାକୁ ପଡ଼ିବ । କିନ୍ତୁ ବେଶିବେଳ ଧରି ବିଚାର କରିବାର ସମୟ ବା କାହିଁ ? ଯାହା କରିବାର କଥା, ବର୍ତ୍ତମାନ ସଙ୍ଗେ ସଙ୍ଗେ ତାହା ଠିକ୍ କରିବାକୁ ହେବ ।"

ଚନ୍ଦ୍ରବର୍ମା ବୁଝି ପାରିଲେ ଯେ ପ୍ରାସାଦ ଭିତରେ ପଶିବା ସେତେବେଳେ ସମ୍ଭବପର ନୁହେଁ । ସେଠି ଠିଆ ହୋଇ ରହିବା ଅର୍ଥ ଦୁଇ ଦିଗରୁ ଆକ୍ରମଣର ଶିକାର ହେବା । ତାଙ୍କ ସେନାପତି ବୀରମଲ୍ଲ ଅବସ୍ଥା ବୁଝିପାରି ପାଟି କରି କହିଲେ, "ଯୁବରାଜ, ଆପଣ ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ହଟି ଯାଆନ୍ତୁ । ଆମର ବୀର ସୈନିକମାନେ ଆପଣଙ୍କୁ ବେଷ୍ଟନ କରି ଏଠାରୁ ନେଇଯିବେ ।"

ବେଶି ସମୟ ଧରି ଭାବିବା ଭଳି ସମୟ ଚନ୍ଦ୍ରବର୍ମାଙ୍କ ହାତରେ ନଥିଲା । ଶତ୍ରୁପକ୍ଷର ଅଶ୍ୱଦଳ ଝପଟି ଆସୁଥିଲେ । ଚନ୍ଦ୍ରବର୍ମା ବିପରୀତ ଦିଗକୁ ଘୋଡ଼ାର ମୁହଁ ବୁଲାଇ ଦେଲେ ଓ ଡାକିଲେ, "ସୁବାହୁ !"

ସୁବାହୁ ନିଜ ଘୋଡ଼ାକୁ ଯୁବରାଜଙ୍କ ଘୋଡ଼ା ପାଖେ ପାଖେ ଚଲାଇ ତରବାରି ସାହାଯ୍ୟରେ ଶତ୍ରୁ ସୈନିକମାନଙ୍କୁ ହଟାଇ ହଟାଇ ବାଟ ପରିଷ୍କାର କରିବାକୁ ଲାଗିଲେ । ତାଙ୍କ ବିକ୍ରମ ଦେଖି ଭୟଭୀତ ହୋଇ ଶତ୍ରୁମାନେ ପଛକୁ ହଟିଗଲେ ।




ଶତ୍ରୁ ସୈନ୍ୟମାନେ ଭାବୁଥିଲେ ସେମାନଙ୍କ ଯୋଜନା ସଫଳ ହେବାକୁ ଯାଉଛି । ଆଗରୁ ଓ ପଛରୁ ଚେପି ହୋଇଯାଇ ଚନ୍ଦ୍ରବର୍ମା ନିରୁପାୟ ହୋଇ ଧରା ପଡ଼ିବେ । ହଠାତ୍ ଚନ୍ଦ୍ରବର୍ମା ଓ ସୁବାହୁ ସେମାନଙ୍କ ମଝିରୁ ଖସି ଚାଲିଯାଉଥିବା ଦେଖି ସେମାନଙ୍କ ବିସ୍ମୟର ସୀମା ରହିଲା ନାହିଁ ।

"ଆରେ, ଆରେ, ଏ ଯେଉଁ ଦୁଇଜଣ ବିଜୁଳି ବେଗରେ ଖସିଗଲେ, ସେ ଦୁଇଜଣ କିଏ ?" କେହି କେହି ପଚାରିଲେ ।

"ତାଙ୍କ ଭିତରୁ ଜଣେ ଯୁବରାଜ ଚନ୍ଦ୍ରବର୍ମା ପରା ! ହାୟ, ହାୟ, ଆମ କବଳରୁ ଯୁବରାଜ ଖସିଗଲେ ! ଆମର ଏତେ ସତର୍କତା ତେବେ ପଣ୍ଡ ହେଲା !" ସପକେତୁର ଜଣେ ଅନୁଚର ସନ୍ତ୍ରସ୍ତ କଣ୍ଠରେ କହିଲା ।

"ଆରେ, ବୁଦ୍ଧୁମାନେ, ଶିକାର ତ ଖସିଗଲା । ତମେମାନେ କରୁଥିଲ କ'ଣ ?" ଜଣେ ଦଳପତି ସୈନିକମାନଙ୍କୁ ଧମକ ଦେଇ ଚିତ୍କାର କଲା ।

"ବାବୁ, ଆମକୁ ତ କହୁଦେଉଛ ! ତମେ ନିଜେ କ'ଣ କରୁଥିଲ ? ତମେ ପରା ତାଙ୍କୁ ଚିହ୍ନିଛ ? ଧରି ପକାଇଲ ନାହିଁ କାହିଁକି ?" କେହି ଜଣେ ଥଟ୍ଟା କରି କହିଲା ।

କିଛି ସମୟ ପର୍ଯ୍ୟନ୍ତ କୋଳାହଳ କରି ଶତ୍ରୁ ସୈନ୍ୟମାନେ ଚନ୍ଦ୍ରବର୍ମାଙ୍କ ଅନୁଧାବନ କରି ତାଙ୍କୁ ଧରିବା ପାଇଁ ଠିକ୍ କଲେ । କିନ୍ତୁ ସେ ଯୋଜନା ଫଳ ହେଲା ନାହିଁ । ସେନାପତି ଧୀରମଲ୍ଲ ସେମାନଙ୍କୁ ରୋକିଦେଲେ । ଚନ୍ଦ୍ରବର୍ମା ଓ ସୁବାହୁ ପଳାୟନ କଲେ ।

ରାଜପଥରେ କିଛିଦୂର ଯାଇ ସେମାନେ ଦକ୍ଷୀଣ ଦିଗରେ ଅଗ୍ରସର ହେଲେ । କେବଳ ଦକ୍ଷୀଣ ଦ୍ୱାର ଦେଇ ସେଠାରୁ ବାହାରି ଯିବା ସମ୍ଭବ ବୋଲି ଚନ୍ଦ୍ରବର୍ମା ବୁଝିଥିଲେ । ଅନ୍ୟ ସବୁ ଦ୍ୱାର ଶତ୍ରୁମାନେ ଦଖଲ୍ କରି ଜଗି



ରହିଛନ୍ତି ବୋଲି ସେ ଜାଣି ପାରୁଥିଲେ । ଦକ୍ଷୀଣ ଦ୍ୱାର ପାଖରେ ପହଞ୍ଚି ଚନ୍ଦ୍ରବର୍ମା ଓ ସୁବାହୁ ଘୋଡ଼ା ରୋକି ଦ୍ୱାର ପାଖରେ କୌଣସି ଶତ୍ରୁ ସୈନ୍ୟ ଲୁଚି ରହିଛନ୍ତି କି ନାହିଁ ତାହା ଦେଖିବାକୁ ଏଣେ ତେଣେ ଅନାଇଲେ । ସେଠାରେ ସେମାନେ ରହିଥିବାର କାହିଁ ଜଣାଗଲା ନାହିଁ । ଲୋକେ ଦ୍ୱାର ଦେଇ ଯିବା ଆସିବା କରୁଥିଲେ । ତେବେ ଟିକିଏ ଧ୍ୟାନ ଦେଇ ଦେଖିବାରୁ ଜଣା ପଡ଼ିଗଲା, ଶତ୍ରୁପକ୍ଷର ପାଞ୍ଚ ଛଅଜଣ ସୈନିକ ସେଠି ଅଛନ୍ତି । ସେମାନେ ଘୋଡ଼ା ଖୁଣ୍ଟିରେ ବାନ୍ଧି-ଦେଇ ଗପସପରେ ମାତି ରହିଥିଲେ । ସେମାନେ ଅସାବଧାନ ଥିଲେ । ଚନ୍ଦ୍ରବର୍ମା ସେ ବାଟରେ ପଳାଇବାକୁ ବାହାରିବେ, ଏ ସମ୍ଭାବନା ସେମାନଙ୍କ ମୁଣ୍ଡକୁ ଆସି ନଥିଲା ।

ସୁବାହୁ ଯେ କେବଳ ଜଣେ କୁଶଳୀ ଯୋଦ୍ଧା ଥିଲେ, ତାହା ନୁହେଁ, ସଙ୍କଟ ବେଳେ କ୍ଷିପ୍ର ଭାବରେ ନିଜ କର୍ତ୍ତବ୍ୟ ନିରୂପଣ କରିବା ଭଳି ଶକ୍ତି ତାଙ୍କର ଥିଲା । ଯୁବରାଜ ଚନ୍ଦ୍ରବର୍ମା ସୁବାହୁଙ୍କୁ ସମ୍ପୂର୍ଣ୍ଣ ବିଶ୍ୱାସ କରୁଥିଲେ ।

"ଯୁବରାଜ ! ଆମ ସେନାପତି ସର୍ପକେତୁର ପ୍ରଧାନ ସୈନ୍ୟଦଳକୁ ଅଟକାଇ ରଖିଛନ୍ତି । ତେବେ କେତେ ସମୟ ପର୍ଯ୍ୟନ୍ତ ସେ ଅଟକାଇ ରଖି ପାରିବେ, ସେକଥା କହିବା ସମ୍ଭବପର ନୁହେଁ । ଏଠି ଅଳ୍ପ କେତେଜଣ ଶତ୍ରୁ ସୈନିକ ଅଛନ୍ତି । ଏମାନେ ସତର୍କ ହେବା ପୂର୍ବରୁ ବିଜୁଳି ବେଗରେ ଘୋଡ଼ା ଛୁଟାଇ ଏହା ଭିତରୁ ବାହାରି ଯିବାକୁ ହେବ ।" ସୁବାହୁ ଯୁବରାଜଙ୍କୁ କହିଲେ ।

ଚନ୍ଦ୍ରବର୍ମା ତତ୍କ୍ଷଣାତ୍ ସେ ପରାମର୍ଶକୁ କାମରେ ଲଗାଇଲେ । ସେ ତୀବ୍ର ଗତିରେ ଘୋଡ଼ା ଛୁଟାଇ ଦେଲେ ।

ଶତ୍ରୁପକ୍ଷର ସୈନ୍ୟମାନେ ଚମକି ପଡି ନିଜ ନିଜ ଘୋଡ଼ା ଉପରକୁ କୁଦିପଡି ସେମାନଙ୍କ ଅନୁସରଣ କଲେ । ଜଣେ ଦୁଇଜଣ ଘୋଡ଼ା ଚଢ଼ିବାର ସମୟ ନ ପାଇ ଦୌଡି ଦୌଡି ସୁବାହୁ ଓ ଯୁବରାଜଙ୍କୁ ଧରିବାକୁ ଚେଷ୍ଟା କଲେ ।

"ସୁବାହୁ ! ଆମେ ଟିକିଏ ବି ବିଳମ୍ବ ନକରି ଦ୍ୱାର ଅତିକ୍ରମ କରିବା ଆବଶ୍ୟକ ।



ମୁହୂର୍ତ୍ତକ ସକାଶେ ମଧ୍ୟ ଘୋଡ଼ା ଅଟକାଇବ ନାହିଁ । ଯିଏ ପାଖକୁ ଆସିବ, ତାକୁ ସଙ୍ଗେ ସଙ୍ଗେ ବଧ କରିବ ।" ଶତ୍ରୁ ସୈନ୍ୟମାନେ ଯେପରି ଏ ଚେତାବନୀ ଶୁଣିପାରିବେ, ସେହିପରି କଣ୍ଠରେ ଚନ୍ଦ୍ରବର୍ମା କହିଲେ ।

ତିନିଜଣ ଶତ୍ରୁ ସୈନ୍ୟ ଚନ୍ଦ୍ରବର୍ମାଙ୍କ ବାଟ ଓଗାଳିବାର ଚେଷ୍ଟା କରି କହିଲେ, "ଖବର୍‌ଦାର୍ ! ପଳାଇ ଯାଅନାହିଁ । ଘୋଡ଼ା ରୋକ । ନହେଲେ ମରିବ !"

"କିଏ ମରୁଛି ଦେଖାଯାଉ ।" ଏହା କହି ସୁବାହୁ ତୀବ୍ର ଗତିରେ ଯାଉଥିବା ନିଜ ଘୋଡ଼ାକୁ ଅଟକାଇ ବିଜୁଳି ଗତିରେ ନିଜ ତରବାରି ବୁଲାଇ ଆଣିଲେ । ସଙ୍ଗେ ସଙ୍ଗେ ବାଟ ଓଗାଳୁଥିବା ସୈନିକଟି ତଳେ ପଡ଼ିଗଲା । ତାର ଦୁଇ ସାଥି ସେ ଦୃଶ୍ୟ ଦେଖି କିଛି ନକହି ତଳେ ଶୋଇ ପଡ଼ିଲେ ।

ସେମାନଙ୍କର ଅନ୍ୟ ତିନିଜଣ ସାଥି ନିଜ ନିଜ ଘୋଡ଼ା ଉପରକୁ ଉଠିପଡ଼ି ଚନ୍ଦ୍ରବର୍ମା ଓ ସୁବାହୁଙ୍କୁ ଅନୁସରଣ କଲେ ।

ତେବେ ସୁବାହୁ ଓ ଚନ୍ଦ୍ରବର୍ମା ଥରେ ମଧ୍ୟ ପଛକୁ ବୁଲି ଦେଖିଲେ ନାହିଁ । ସେମାନେ ଘୋଡ଼ା ଛୁଟାଇ ଚାଲିଲେ ।

ପଛରୁ ସେ ତିନିଶତ୍ରୁ ସୈନିକଙ୍କର ବିକଟ ରଡ଼ି ଶୁଭୁଥାଏ ।

ସୁବାହୁ କହିଲେ, "ଯୁବରାଜ ! ଉପଯୁକ୍ତ ସୁଯୋଗ ଦେଖି ଘୋଡ଼ା ରୋକି ଏ ତିନିଜଣଙ୍କୁ ଶିକ୍ଷା ଦେବା ଦରକାର । ନହେଲେ ଏମାନେ ଆମ ପିଛା ଛାଡ଼ିବେ ନାହିଁ ବୋଲି ମନେହୁଏ ।"

"ନା, ବର୍ତ୍ତମାନ ଆମେ ଆମ୍ଭ ଗତି ଶିଥିଳ କରିବା ଠିକ୍ ହେବ ନାହିଁ । ଇତିମଧ୍ୟରେ ସମ୍ଭବତଃ ଆମ ପଳାୟନ ବିଷୟରେ ଖବର ପାଇଯିବଣି । ସେ ହୁଏତ ଆମ ପଛରେ ବଡ଼ ସୈନ୍ୟଦଳ ଧରି ଆସୁଥିବ । ଏ ତିନିଜଣ ଯଦି ଅନୁସରଣ କରୁଛନ୍ତି ତ କରନ୍ତୁ । କିଛି ଯାଏ ଆସେ ନାହିଁ । ଏମାନେ ହୁଏତ ଫେରିଯିବେ, ନହେଲେ ଆଉ ଅଳ୍ପ ବାଟ ଗଲେ ପାହାଡ଼ିଆ ସ୍ଥାନଟିଏ ପଡ଼ିବ; ସେଇଠାରେ ଏମାନଙ୍କୁ ଦେଖିନେବା ।



ବର୍ତ୍ତମାନ ଯେତିକି ଯୋରେ ପାରୁଛ ସେତେ ଯୋରେ ଘୋଡ଼ା ଛୁଟାଇ ଚାଲ ।”

ଚନ୍ଦ୍ରବର୍ମା ଏତିକି କହିସାରିଛନ୍ତି, ଗୋଟାଏ ତୀର ଆସି ତାଙ୍କ ଡାହାଣ କାନ୍ଧ ଛୁଇଁ ସର୍ ସର୍ ହୋଇ ଚାଲିଗଲା । “ସୁବାହୁ !” ଚନ୍ଦ୍ରବର୍ମା ଚିତ୍କାର କରି ସୁବାହୁଙ୍କ ଆଡ଼େ ଅନାଇ ଦେଖିଲେ ଆଉ ଗୋଟାଏ ତୀର ଠିକ୍ ତାଙ୍କ ମୁଣ୍ଡରେ ଲାଗିବାର କ୍ଷଣକ ଆଗରୁ ସେ ମୁଣ୍ଡ ତଳକୁ କଲେ ଓ ତୀରଟି ତାଙ୍କୁ ଅତିକ୍ରମ କରି ଚାଲିଗଲା ।

“ଯୁବରାଜ ! ମୁଁ ଠିକ୍ ଅଛି ।” ଏହା କହି ସୁବାହୁ ପଛକୁ ଅନାଇଲେ । ସେ ଦେଖିଲେ, ଜଣେ ସୈନିକ ନିଜ ଦାନ୍ତରେ ଲଗାମ୍ ଟାଣି ରଖି ଦୁଇ ହାତରେ ଧନୁ ତୀର ଚାଳନା କରୁଛି । ସୁବାହୁ ଯୁବରାଜଙ୍କୁ ସତର୍କ କରିଦେବାକୁ ଯାଉଛନ୍ତି, ସେତିକିବେଳେ ସେ ତୀରନ୍ଦାଜର ଘୋଡ଼ା ଦେହରେ ଧକ୍କା ଲଗାଇଲା ପଛରୁ ଆସୁଥିବା ଅନ୍ୟ ଏକ ଘୋଡ଼ା । ଫଳରେ ତୀରନ୍ଦାଜର ଘୋଡ଼ା ଲଂଫ ଦେଇ ତଳେ ପଡ଼ିଗଲା । ପ୍ରାୟ ପାଖିହାତ ଉପରକୁ ଛିଟିକି ପଡି ସେ ଘୋଡ଼୍ ସବାର ମଧ୍ୟ ତଳେ ପଡ଼ିଲା । ପଛରେ ଆସୁଥିବା ସୈନିକମାନେ ରହିଗଲେ ।

ସୁବାହୁ ଖୁସି ହେଲେ । ଶତ୍ରୁ ସୈନିକ-ମାନେ ଯେ ତାଙ୍କୁ ଅନୁସରଣ କରିବାରୁ ବିରତ ହେବେ, ସେ ଏତିକି ଆଶା କଲେ ।

କିନ୍ତୁ ସେ ସୈନିକମାନେ ନିଜର ଆହତ ସାଥି ପ୍ରତି ଥରେ ମାତ୍ର ଦୃଷ୍ଟିପାତ କରି ପୁଣି ଘୋଡ଼ା ଛୁଟାଇଲେ । ନିଜ ସାଥିର ଦୁରବସ୍ଥା ପ୍ରତି ଟିକିଏ ସହାନୁଭୂତି ସେମାନଙ୍କ ମନରେ ନଥିଲା । ଯୁବରାଜ ଓ ସୁବାହୁଙ୍କୁ ଧରି ପାରିଲେ ବା ମାରି ପକାଇ ପାରିଲେ ସର୍ପକେତୁ ସେମାନଙ୍କୁ ପ୍ରଚୁର ପୁରସ୍କାର ଦେବ, ସେମାନେ ନିଶ୍ଚୟ ଏହିପରି ଲୋଭର ବଶବର୍ତ୍ତୀ ହୋଇ କାମ କରୁଥିଲେ ବୋଲି ସୁବାହୁ ବୁଝିଲେ ।

“ଯୁବରାଜ ! ଆମକୁ ଅନୁସରଣ କରୁଥିବା ଦୁଷ୍ଟଙ୍କ ଭିତରେ ଯିଏ ତୀରନ୍ଦାଜ ଥିଲା, ସିଏ ଖତମ୍ ହୋଇ ଯାଇଛି । ବାକିମାନଙ୍କ ହାତରେ ଧନୁତୀର ନାହିଁ, ଖାଲି ତରବାରି



ଅଛି । ଯଦି ଆମେ ଠିକଏ ରହିଯିବା ତ ଅକ୍ଲେଶରେ ଏମାନଙ୍କୁ ଶେଷ କରିଦେଇ ପାରିବା ।" ସୁବାହୁ କହିଲେ ।

ଚନ୍ଦ୍ରବର୍ମା ଥରେ ଆଖି ବୁଲାଇ ନେଲେ । ବାସ୍ତବିକ ସେମାନଙ୍କ ଗତି ଶତ୍ରୁଦଳ ପାଇଁ ରୋଧ କରିଦେବା ବିଶେଷ କଷ୍ଟକର ହେବ ନାହିଁ ବୋଲି ତାଙ୍କର ବି ଧାରଣା ହେଲା । ସେ ଓ ସୁବାହୁ ନିଜ ନିଜ ଘୋଡ଼ାର ଗତି ଶିଥିଳ କରି ରାସ୍ତାର ଗୋଟିଏ କଡ଼କୁ ଘୁଞ୍ଚି ଆସି ଅନୁସରଣକାରୀମାନଙ୍କୁ ଅପେକ୍ଷା କଲେ ।

ସେମାନେ ଏପରି ଭାବରେ ରହିଯିବାର ଦେଖି ଅନୁସରଣକାରୀମାନେ ମଧ୍ୟ ରହିଗଲେ ଓ ଚୁପ୍ ଚୁପ୍ ପରସ୍ପର କ'ଣ କୁହାକୁହି ହେଲେ ।

"ଯୁବରାଜ! ଏମାନେ ବୋଧହୁଏ ଆମ ପାଖକୁ ଆସିବାକୁ ସାହସ କରିବେ ନାହିଁ । ବରଂ ଆମେ ସେମାନଙ୍କ ପାଖକୁ ଯାଇ ସେମାନଙ୍କୁ ଶେଷ କରିଦେବା ଠିକ୍ ହେବ!" ସୁବାହୁ କହିଲେ ।

"ବେଶ୍, ସୁବାହୁ, ବେଶ୍ । ତାହାହିଁ ହେଉ । ଏମାନେ ଆମକୁ ଅନୁସରଣ କରୁଥିବା ଯାଏ ଆମେ ନିରାପଦ ହୋଇ ପାରିବା ନାହିଁ । ଯାହା କରିବାର ଶୀଘ୍ର କର । ବେଶି ସମୟ ନଷ୍ଟକରି ପାରିବା ନାହିଁ ।" ଚନ୍ଦ୍ରବର୍ମା କହିଲେ ।

ଦୁହେଁ ଘୋଡ଼ା ବୁଲାଇ ଶତ୍ରୁ ସୈନିକଙ୍କ ଆଡ଼େ ଧାବମାନ ହେଲେ । ସଙ୍ଗେ ସଙ୍ଗେ ସେ ସୈନିକମାନେ ମଧ୍ୟ ଘୋଡ଼ା ବୁଲାଇ ପୃଷ୍ଠଭଙ୍ଗ ଦେଲେ । ସୁବାହୁ ଓ ଯୁବରାଜ କ୍ଷିପ୍ର ଗତିରେ ସେମାନଙ୍କୁ ଅନୁସରଣ କଲେ । ଗୁହାଁ ଗୁହାଁ ଦୂରରୁ ଦୁର୍ଗ-ନଗରୀ ଦେଖାଗଲା । ସେତିକି ନୁହେଁ, ଦୁର୍ଗ ପଟରୁ ଦଳେ ସୈନିକ ଧାବମାନ ହେଉଥିବାର ମଧ୍ୟ ବୁଝା ପଡ଼ିଲା ।

ଯୁବରାଜ କହିଲେ, "ସୁବାହୁ! ଆଉ ଅଗ୍ରସର ହେବା ଆମ ପକ୍ଷରେ ବିପଜ୍ଜନକ । ସେ ଶତ୍ରୁ ସୈନିକମାନେ କୌଶଳ କରି ଆମକୁ ଏ ବାଟରେ ଆଣିଥିବା ଅସମ୍ଭବ ନୁହେଁ । ବର୍ତ୍ତମାନ ଆମେ ବହୁତ ବଡ଼ ବିପଦର ସମ୍ମୁଖିନ!"

"ହଁ, ଯୁବରାଜ, ଭୁଲ ହୋଇଗଲା । ଆମେ ପୁନର୍ବାର ଏ ରାସ୍ତାରେ ପଛକୁ ଫେରିବା ଠିକ୍ ହୋଇ ନାହିଁ ।" ସୁବାହୁ କହିଲେ । ଦୁହେଁ ଘୋଡ଼ା ବୁଲାଇଲେ । ତେବେ ଏଥର ସିଧା ରାଜପଥରେ ନ ଯାଇ ସେମାନେ ଅପନ୍ତରା ଭିତରକୁ ପଶିଗଲେ । ଶତ୍ରୁ ଦଳ ମଧ୍ୟ ସେମାନଙ୍କୁ ଧରିବା ନିମନ୍ତେ ଅପନ୍ତରାରେ ପଶିଲେ ।

ସେ ପାହାଡ଼ିଆ ଭୂଇଁ ଉପରେ ଘୋଡ଼ା ଛୁଟାଇବା ଅବସ୍ଥାରେ ଯୁବରାଜ ବୁଝିପାରିଲେ, ଘୋଡ଼ା ଦୁଇଟି ଆଉ ବେଶି ସମୟ ସେମାନଙ୍କ ସେବା କରିପାରିବେ ନାହିଁ । ହଠାତ୍ ହୁଏତ ତଳେ ପଡ଼ିଯିବେ ।

"ସୁବାହୁ! ଏଥର ଘୋଡ଼ା ବାଦ୍ ଦେଇ ଆମକୁ ଆମ ଗୋଡ଼ ଉପରେ ଭରସା ରଖି ଆତ୍ମରକ୍ଷା ଦିଗରେ ଚେଷ୍ଟା କରିବାକୁ ହେବ ।"

"ଯୁବରାଜ! ମୁଁ ବି ସେଇଆ ଭାବୁଥିଲି ।" ସୁବାହୁ ଓ ଯୁବରାଜ ଘୋଡ଼ାରୁ ଓହ୍ଲାଇ ପଡ଼ି ଦୌଡ଼ିବାକୁ ଲାଗିଲେ । ସଙ୍ଗେ ସଙ୍ଗେ ଶତ୍ରୁ ସୈନିକ ଦଳରୁ ମଧ୍ୟ କେତେଜଣ ଘୋଡ଼ା ଛାଡ଼ି ସେମାନଙ୍କ ପଛରେ ଦୌଡ଼ିଲେ । ସେମାନଙ୍କ ଭିତରୁ କେହି ଜଣେ ପାଟି କରି କହିଲା, "ଭାଇମାନେ! ଏ ରାସ୍ତାରେ ଦୌଡ଼ିବା ବିପଜ୍ଜନକ । ଗୈଗ ଗାତରେ ଗୋଡ଼ ପଶିଗଲେ କଥା ସରିଲା । ପଥର ଫୋପାଡ଼ି ଏ ଦୁଇଜଣଙ୍କୁ ଆହତ କରିବା ଭଲ ।"

ଏହା ପରେ ପଥରମାନ ସାଇଁ ସାଇଁ ଯୁବରାଜ ଓ ସୁବାହୁଙ୍କୁ ଅତିକ୍ରମ କରିଗଲା । ସେ ଦୁହେଁ ଦୌଡ଼ି ଦୌଡ଼ି ଯେଉଁଠି ଅନେକ ଫୁଟ ତଳେ ନଦୀ ପ୍ରବାହିତ ହୋଇଛି, ସେଠି ଆସି ପହଞ୍ଚିଲେ ।

"ସୁବାହୁ! ତମେ ନିଶ୍ଚୟ ସନ୍ତରଣ ଜାଣ! ତେବେ ଆସ । ଭାଗ୍ୟ ପରୀକ୍ଷା କରାଯାଉ ।" ଯୁବରାଜ କହିଲେ । ସଙ୍ଗେ ସଙ୍ଗେ ଦୁହେଁ ଜଳସ୍ରୋତ ଭିତରକୁ ଲମ୍ଫ ଦେଲେ ।

(କ୍ରମଶଃ)






# ପ୍ରତିଭା-ପ୍ରତିଯୋଗିତା

ନିଶା ଗରଜୁଥାଏ । ଭୁହାଲୁ ଭୁହା ଶୀତଳ ପବନ ସାଥିକୁ ବର୍ଷା ହେଉଥାଏ । ବଜ୍ରପାତଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ଏ ଘୋର ଦୁର୍ଯୋଗପୂର୍ଣ୍ଣ ନିଶୀଥରେ ତମେ ଯେ ଏଭଳି ଦୁଃସାହସିକ କାର୍ଯ୍ୟ ହାତକୁ ନେଇଛ, ଏହା କାହାରି ସହିତ ପ୍ରତିଯୋଗିତା

**ବେତାଳ କଥା**



ଯୋଗ୍ୟ ନୁହେଁ ତ ? ପ୍ରକୃତଯୋଗୀ ମନରେ କ'ଣ ଥାଏ, ସେକଥା କହିହେବ ନାହିଁ । ଗୋଟିଏ ଦୃଷ୍ଟାନ୍ତ ଦେଉଛି, ମନ ଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ହେବ ।"

ବେତାଳ ଗପିଲା : ଅନେକ ଦିନ ତଳର କଥା । ଶୁଭନଗର ରାଜ୍ୟର ରାଜା ବିଜୟ-ଦେବ କବି ଓ କଳାକାରମାନଙ୍କୁ ବହୁତ ସମ୍ମାନ ଦେଉଥିଲେ । ତାଙ୍କ ଦରବାରରେ ରାଜକବି ରୂପେ ନିଯୁକ୍ତି ପାଇଥିଲେ ଦେବୀଦାସ । ଦେବୀଦାସ ଯେପରି ସୁକବି ଥିଲେ, ସେହିପରି ଭଲ ମଣିଷ ଥିଲେ ।

ଶୁଭ ନଗର ରାଜ୍ୟର ଗୋଟିଏ ଛୋଟିଆ ସହରରେ ବାସ କରୁଥିଲେ ପ୍ରସନ୍ନ ନାମକ ତରୁଣ କବି । ସେ ଗାଁର ନାନା ସ୍ଥାନ ଦେଇ କବିତା ପାଠ କରୁଥିଲେ ଓ ନିଜେ ସ୍ୱତନ୍ତ୍ର ଭାବରେ କବିତା ଲେଖୁଥିଲେ । ଦେବଦାସଙ୍କ କବିତାକୁ ସେ ଅତ୍ୟନ୍ତ ସମ୍ମାନ ଦେଉଥିଲେ ।

କ୍ରମେ ସେ ବୁଝି ପାରିଲେ ଯେ ସେ ଛୋଟିଆ ସହରରେ ତାଙ୍କ କବିତା ବୁଝି ତା'ର ମର୍ଯ୍ୟାଦା ଦେଲା ଭଳି ଲୋକ ନାହାନ୍ତି । ତାଙ୍କର ଜଣେ ହିତୈଷୀ ବାନ୍ଧବ ତାଙ୍କୁ ରାଜଧାନୀକୁ ଯାଇ ନିଜ କବିତା ରାଜାଙ୍କ ଦୃଷ୍ଟିକୁ ଆଣିବାକୁ ପରାମର୍ଶ ଦେଲେ । ସେଥିରେ ଉତ୍ସାହିତ ହୋଇ ପ୍ରସନ୍ନ ରାଜଧାନୀରେ ଯାଇ ପହଞ୍ଚିଲେ ।

କିନ୍ତୁ ସେଠି ପହଞ୍ଚି ଦେଖିଲେ, ରାଜାଙ୍କ ପାଖକୁ ଯିବା ସହଜ ନୁହେଁ ।

ଦିନେ ସନ୍ଧ୍ୟାରେ ପ୍ରସନ୍ନ ଅତିଥିଭବନ ପାଖରେ ଥିବା ଜଣେ ଜହୁରୀ ସହ କଥାବାର୍ତ୍ତା କରୁଥାନ୍ତି । ସେ କହିଲେ, "ଏ ନଗରରେ ଖାଣ୍ଟି ହୀରା ଚିହ୍ନିଲା ଭଳି ଜହୁରୀ ଅଛନ୍ତି, କିନ୍ତୁ ଗୁଣ ଚିହ୍ନିଲା ଭଳି ଗୁଣିଆ ନାହାନ୍ତି ।"

"ଏପରି କାହିଁକି କହୁଛନ୍ତି ?"

"ମୋ ନିଜ ଅଭିଜ୍ଞତାରୁ କହୁଛି । ମୋ କବିତା ଶୁଣାଇବା ସକାଶେ ରାଜାଙ୍କ ପାଖକୁ ଯିବି—ସେଥିରେ ସୁବିଧା ପାଇଲି ନାହିଁ ।"

"ଦରବାରର ଦଣ୍ଡାଧାରୀଙ୍କୁ କିଛି ସଲାମୀ ଦେବାକୁ ହେବ ।" ଜହୁରୀ କହିଲେ ।

ସଙ୍ଗେ ସଙ୍ଗେ ଗୋଟିଏ ବ୍ୟଙ୍ଗ କବିତା ରଚନା କରି ପ୍ରସନ୍ନ ଶୁଣାଇ ଦେଲେ । ସେ

କନ୍ଧଭାର ମର୍ମ ହେଲା, "ଯେଉଁ ରାଜାଙ୍କ ପାଖକୁ ଯିବାକୁ ହେଲେ ସଲାମୀ ଦେବାକୁ ହେବ, ସେ ରାଜାଙ୍କୁ ଦୂରରୁ ସଲାମ୍ !"

ସେତିକିବେଳେ ରାଜକବି ଦେବାଦାସ ଆସି ପହଞ୍ଚି ଯାଇ ପଛରେ ଦ୍ୱାର ପାଖରୁ ସେ ଦୁହିଁଙ୍କ କଥାବାର୍ତ୍ତା ଶୁଣିଲେ । ସେ ଥିଲେ ଜହୁରୀଙ୍କ ବନ୍ଧୁ । ସେ ଇଶାରା ଦେଇ ଜହୁରୀଙ୍କୁ ନୀରବ ରହିବାକୁ କହିଲେ ।

କିଛି ସମୟ ପରେ ପ୍ରସନ୍ନ ବୁଝି ପାରିଲେ ଯେ ପଛରେ କେହି ଜଣେ ନୀରବରେ ଠିଆ ହୋଇଛି । ସେ ବୁଲି ପଡ଼ି ଦେଖିଲେ ।

ରାଜକବି ପଚାରିଲେ, "ଯୁବକ ! ତମେ ତ ଜଣେ ଖୁବ୍ ବିଚକ୍ଷଣ କବି ବୋଲି ମନେ ହେଉଛି । ଦରବାରକୁ ଯାଉ ନ କାହିଁକି ?"

ଟିକିଏ ଉତ୍ତେଜିତ ହୋଇ ପ୍ରସନ୍ନ କହିଲେ, "ମୋତେ ଯେଉଁଠାକୁ ନେବ କିଏ ? ସିଂହ ଆଗରେ ଯେପରି ଶୃଗାଳର ଗତି ହୁଏ, ରାଜଦରବାରରେ ମୁଁ ପହଞ୍ଚିଲେ ଦେବାଦାସଙ୍କ ଭଳି କବିମାନେ ଫୁଲିଆ ହୋଇ ପଳାଇ ଯିବେ ।"

ପ୍ରସନ୍ନ ବ୍ୟଙ୍ଗକବିତା ରୂପରେ କହିଲେ ।

ରାଜକବି ଦେବାଦାସ ହସିଲେ ଓ କହିଲେ, "ତମକୁ ମୁଁ ରାଜାଙ୍କ ପାଖକୁ ନେଇଯିବି ।"

"ଥଟ୍ଟା କରୁଛନ୍ତି ?" ପଚାରିଲେ ପ୍ରସନ୍ନ ।

"ନା, ତମେ କାଲି ସକାଳେ ପ୍ରସ୍ତୁତ ହୋଇ ରହିଥିବ ।"



ପରଦିନ ରାଜକବିଙ୍କ ଘୋଡ଼ାଗାଡ଼ି ଆସି ଅତିଥିଭବନରେ ପହଞ୍ଚିଲା ଓ ପ୍ରସନ୍ନଙ୍କୁ ଦରବାରକୁ ନେଇଗଲା ।

ଦରବାରର ଦ୍ୱାର ଦେଶରେ ରାଜକବି ଅପେକ୍ଷା କରୁଥିଲେ । ସେତେବେଳକୁ ପ୍ରସନ୍ନ ଜାଣି ସାରିଥିଲେ ସେ କିଏ । ସେ ରାଜକବିଙ୍କୁ ପ୍ରଣାମ କଲେ ଓ ମିନତିଭରା କଣ୍ଠରେ କହିଲେ, "ମୋତେ କ୍ଷମା କରନ୍ତୁ । ନ ଜାଣି ମୋ ଔଦ୍ଧତ୍ୟ ଯୋଗୁଁ ଗତ କାଲି ଆପଣଙ୍କ ଆଗରେହିଁ ଆପଣଙ୍କ ପ୍ରତି ଅସମ୍ମାନଜନକ କଥା କହିଛି । ମୁଁ ମୂର୍ଖ ।"

"ଯୁବକ, ହତାଶ ହେଲେ ମଣିଷ ଅନେକ ଥରେ ଏପରି ଭାବରେ ନିଜର ବିରକ୍ତି ପ୍ରକାଶ

କରିଥାଏ। କବିତାରେ ଅତିଶୟୋକ୍ତି ଏକ ଅଳଙ୍କାର ରୂପେ ସ୍ୱୀକୃତ। କିନ୍ତୁ ତମେ ଯେ ସଚ୍ଚା କବି, ସେଥିରେ ମୋର ସନ୍ଦେହ ନାହିଁ।" ଏହା କହି ରାଜକବି ଦେବୀଦାସ ପ୍ରସନ୍ନଙ୍କୁ ନେଇ ରାଜାଙ୍କ ସହ ପରିଚୟ କରାଇ ଦେଲେ। ରାଜାଙ୍କ ନିର୍ଦ୍ଦେଶରେ ପ୍ରସନ୍ନ ନିଜର କେତୋଟି କବିତା ଶୁଣାଇଲେ। ରାଜା ଓ ଦେବୀଦାସ ଉଭୟେ ସେସବୁ କବିତାର ଉଚ୍ଚ ପ୍ରଶଂସା କଲେ। ରାଜା ପ୍ରସନ୍ନଙ୍କୁ ନିଜ ଦରବାରରେ ଅନ୍ୟତମ ରାଜକବି ରୂପେ ନିଯୁକ୍ତ ଦେଲେ। ଅଳ୍ପଦିନ ଭିତରେ ଗୁଣୀ ସଭାସଦ୍‌ମାନେ ବୁଝିପାରିଲେ ଯେ ପ୍ରସନ୍ନହିଁ ରାଜ୍ୟରେ ଦେବୀଦାସଙ୍କର ଏକମାତ୍ର ସମକକ୍ଷ କବି।

ଦିନେ ରାଜା କହିଲେ, "ମୁଁ ଲକ୍ଷ୍ୟ କରୁଛି, ରାଜ୍ୟରେ ଭିନ୍ନ ଭିନ୍ନ ଧର୍ମ ମତାବଲମ୍ବୀ ଲୋକଙ୍କ ଭିତରେ କଳହ ହେଉଛି। ଶୈବ ମତର ଲୋକେ ବୈଷ୍ଣବମାନଙ୍କୁ ଓ ବୈଷ୍ଣବ-ମାନେ ଶୈବମାନଙ୍କୁ ସହ୍ୟ କରୁ ନାହାନ୍ତି। କିପରି ଧର୍ମର ଅସଲ ମର୍ମ ଶିକ୍ଷା ଦେବା?"

"ମହାରାଜ! ସମସ୍ତ ମତ ବେଦ ଓ ଉପନିଷଦ୍‌ରୁ ଆସିଛି। ଲୋକେ ବେଦ ଓ ଉପନିଷଦ୍ ବୁଝୁ ନଥିବାରୁ ଏଭଳି ମୋହରେ ପଡ଼ିଛନ୍ତି।" ଦେବୀଦାସ କହିଲେ।

ରାଜା ଟିକିଏ ଚିନ୍ତା କରି କହିଲେ, "ଠିକ୍ କଥା। କବିବର! ଆପଣ କିମ୍ବା ପ୍ରସନ୍ନ ବେଦ ଓ ଉପନିଷଦର ସାର କଥାକୁ ସରଳ କବିତାରେ ପ୍ରକାଶ କରିପାରିବେ?"



"ଆପଣ ଠିକ୍ କହୁଛନ୍ତି ମହାରାଜ ।" କହିଲେ ପ୍ରସନ୍ନ ।

"ଆପଣଙ୍କ ଭିତରୁ କିଏ ତେବେ ଏ କାମ ହାତକୁ ନେବ ? ପ୍ରସନ୍ନ ! ତମେ ଯୁବକ । ଏ କାମଟି ଶୀଘ୍ର ହେବା ଦରକାର । ତମେ ଏହା କରିପାରିବ ?" ରାଜା ପଚାରିଲେ ।

"ମହାରାଜ ! ବେଦ ଉପନିଷଦର ସାର କଥା କବିତାରେ ଲେଖିବା ସହଜ ନୁହେଁ ।" ପ୍ରସନ୍ନ କହିଲେ ।

"କାହିଁକି ସହଜ ହେବ ନାହିଁ ? ଏହା ନିଶ୍ଚୟ କରି ହେବ ।" ଦେବୀଦାସ କହିଲେ ।

ରାଜା ହସି କହିଲେ, "ଦେବୀଦାସ ଏହା ପାରିବେ ବୋଲି ମୁଁ ବୁଝୁଛି । କିନ୍ତୁ ମୋର ଇଚ୍ଛା ପ୍ରସନ୍ନ ମଧ୍ୟ ଏ କାମରେ ହାତ ଦିଅନ୍ତୁ । ମୁଁ ବର୍ଷଟିଏ ସମୟ ଦେଲି । ଯିଏ ଏ କାମ ହଜାରେ ଧାଡ଼ିରେ କରିପାରିବ, ତାକୁ ଏକଲକ୍ଷ ମୁଦ୍ରା ପୁରସ୍କାର ଦେବି ।"

ଏହା ପରେ ଦୁଇ କବି ଏ କାମରେ ହାତ ଦେଲେ । ଦେବୀଦାସ ବେଦ ଉପନିଷଦ୍ ଅଧ୍ୟୟନ କରିଥିଲେ । ତେଣୁ ସେ ଆଠମାସରେ ହଜାରେ ଧାଡ଼ି ବିଶିଷ୍ଟ କବିତା ଲେଖି ଦେଲେ । ପ୍ରସନ୍ନ ପ୍ରତ୍ୟେକ ଦିନ ସକାଳ ଉଠିଯାଇ ସଂସ୍କୃତ ପଣ୍ଡିତଙ୍କ ପାଖକୁ ଯାଇ ବେଦ ଉପନିଷଦ ବୁଝିବାର ଚେଷ୍ଟା କରନ୍ତି ।

ଦେବୀଦାସ ନିଜ କବିତା ଲେଖା ଶେଷ କରିସୁଦ୍ଧା ରାଜାଙ୍କ ପାଖକୁ ନଯାଇ ଅପେକ୍ଷା କଲେ । ପ୍ରସନ୍ନ ଯେ କାମଟି ଶେଷ କରି ନାହାନ୍ତି, ଏହା ସେ ବୁଝି ପାରୁଥିଲେ ।





ବର୍ଷ ପୂରା ହେଲା । ପ୍ରସନ୍ନ ନିଜ କବିତା ଶେଷ କରି ଦେବୀଦାସଙ୍କୁ କହିଲେ, "କବିବର ! ମୁଁ ମୋ କାମ ଶେଷ କରିଛି ।"

"ତେବେ ଚାଲ । ରାଜାଙ୍କୁ ଆମ କବିତା ଭେଟି ଦେବା ।" କହିଲେ ଦେବୀଦାସ । ଦୁହେଁ ଯାଇ ରାଜାଙ୍କୁ କବିତା ଶୁଣାଇଲେ ।

ରାଜା ଦୁହିଙ୍କ କବିତାରେ ମୁଗ୍ଧ ହେଲେ । କାହାକୁ ପୁରସ୍କାର ଦେବେ, ସେକଥା ଠଉରାଇ ପାରିଲେ ନାହିଁ । କାହା କବିତାର ମୂଲ୍ୟ କେତେ, ସେକଥା ଠଉରାଇବା ନିମନ୍ତେ ରାଜା ଏହା ପୂର୍ବରୁ ସର୍ବଦା ରାଜକବି ଦେବୀଦାସଙ୍କ ସହାୟତା ନେଉଥିଲେ । ବର୍ତ୍ତମାନ ଦେବୀଦାସଙ୍କ ରଚନା ଉପରେ ମତ ଦେବ କିଏ ?

ଯୋଗକୁ ରାଜଗୁରୁ ଚରଞ୍ଜିବ ଆସି ସେହି ସମୟରେ ରାଜପ୍ରାସାଦରେ ପହଞ୍ଚିଲେ । ରାଜ-ଗୁରୁ ଜଣେ ଅସାମାନ୍ୟ ବ୍ୟକ୍ତି ଥିଲେ । କାବ୍ୟ କବିତାରେ ଯେପରି, ଦର୍ଶନ ଶାସ୍ତ୍ରରେ ସେହିପରି ତାଙ୍କର ଅଗାଧ ଜ୍ଞାନ ଥିଲା । ରାଜା ଖୁସି ହୋଇ ଚରଞ୍ଜିବଙ୍କୁ ଦୁଇ କବିଙ୍କ କବିତା ପଢ଼ି ପୁରସ୍କାର କାହାର ପ୍ରାପ୍ୟ ସେକଥା ଜଣାଇବାକୁ କହିଲେ ।

ରାଜଗୁରୁ ଦୁଇଜଣଙ୍କ କବିତା ମନ ଧ୍ୟାନ ଦେଇ ପଢ଼ି କହିଲେ, "ମହାରାଜ ! ଆପଣ ଦୁଇଜଣଙ୍କୁହିଁ ପୁରସ୍କାର ଦିଅନ୍ତୁ ।"

ଏ ରାୟ ଶୁଣି ଟିକିଏ ବିଚଳିତ କଣ୍ଠରେ ଦେବୀଦାସ କହିଲେ, "ରାଜଗୁରୁ ମହୋଦୟ ! ପ୍ରସନ୍ନ ପୁରାପୁରି ନିଜ ଉପରେ ନିର୍ଭର କରି ତାଙ୍କ କାର୍ଯ୍ୟ ସମାପନ କରିଛନ୍ତି, ଏକଥା କହିହେବ ନାହିଁ । ସେ ଅନେକ ପଣ୍ଡିତଙ୍କ ସାହାଯ୍ୟ ନେଇଛନ୍ତି । କିନ୍ତୁ ମୁଁ କାହାର ସାହାଯ୍ୟ ନେଇ ନାହିଁ । ସେତିକି ନୁହେଁ । ମୁଁ ଚାରିମାସ ପୂର୍ବରୁହିଁ କବିତା ଲେଖା ଶେଷ କରିଛି । କିନ୍ତୁ ପ୍ରସନ୍ନ ଶେଷ କରନ୍ତୁ, ସେଥିପାଇଁ ଅପେକ୍ଷା କରିଥିଲି । ମୁଁ ଯେ ମୋ କବିତା ଚାରିମାସ ତଳେ ଶେଷ କରିଥିଲି, ସେକଥା ମନ୍ତ୍ରୀ ଜାଣନ୍ତି ।"

"ସତେ ? ତେବେ ଆପଣ ପ୍ରଥମେ ଆପଣଙ୍କ କବିତା ରାଜାଙ୍କ ପାଖରେ ପେଶ୍ ନକଲେ କାହିଁକି ?" ରାଜଗୁରୁ ପଚାରିଲେ ।

"ମୁଁ ଶୀଘ୍ର କବିତା ଲେଖି ପାରିଥିବା ଯୋଗୁଁ ପୁରସ୍କାର ପାଇବ—ଏହା ମୋର ଉଦ୍ଦେଶ୍ୟ ନୁହେଁ । ମୋ ରଚନା ଶ୍ରେଷ୍ଠ ବୋଲି ମୋତେ ପୁରସ୍କାର ମିଳୁ, ଏହାହିଁ ଥିଲା ମୋର ଉଦ୍ଦେଶ୍ୟ ।" ଦେବାଦାସ କହିଲେ ।

"ଆପଣ ଏତେ ଶୀଘ୍ର ଏତେ ସୁନ୍ଦର କବିତା ଶେଷ କଲେ କିପରି ?" ରାଜଗୁରୁ ପଚାରିଲେ ।

"ଏପରି କାମ ମୁଁ ଏକାଧିକବାର କରିଛି । ମୁଁ ଏକବର୍ଷ ଭିତରେ ମହାଭାରତର ପଦ୍ୟାନୁବାଦ କରି ପାରିଥିଲି । ପୁଣି ଦୁଇବର୍ଷରେ ଅଷ୍ଟାଦଶ ମହାପୁରାଣର ଅନୁବାଦ କରିଥିଲି ।" ଦେବାଦାସ କହିଲେ ।

"ହଁ ଗୁରୁଦେବ, ଏହା ସତ ।" ରାଜା କହିଲେ ।

"ଆପଣଙ୍କର କିଛି ବକ୍ତବ୍ୟ ଅଛି ?" ରାଜଗୁରୁ ପ୍ରସାଦଙ୍କୁ ପଚାରିଲେ ।

"ଗୁରୁଦେବ ! କବିବର ଦେବାଦାସଙ୍କ କଥା ଠିକ୍ । ମୁଁ ଏ କବିତା ରଚନା କରିବା ବେଳେ ବେଦ ଉପନିଷଦ୍‌ର ମର୍ମ ବୁଝିବା ନିମନ୍ତେ ଅନେକ ପଣ୍ଡିତଙ୍କ ସହାୟତା ନେଇଛି । ସେମାନେ ଦେଇଥିବା ବ୍ୟାଖ୍ୟାରୁ ଅନେକ ଶବ୍ଦ ଓ ଭାବ ମୋ କବିତାରେ ସ୍ଥାନ ପାଇଛି । ମୁଁ ପୁରସ୍କାର ପାଇଁ ଏହା ଲେଖି ନାହିଁ, ଲୋକେ ଲାଭବାନ ହେବା ପାଇଁ ଲେଖିଛି । ବାସ୍ତବରେ କବିବର ଦେବାଦାସଙ୍କ ତୁଳନାରେ ମୁଁ କବିତାରେ ଶିକ୍ଷାର୍ଥୀ ମାତ୍ର । ତାଙ୍କର ପାଣ୍ଡିତ୍ୟ ଆଗରେ ମୋର ଜ୍ଞାନ ତୁଚ୍ଛ ।" ପ୍ରସାଦ କହିଲେ ।



ରାଜଗୁରୁ ଗମ୍ଭୀର ସ୍ୱରରେ ରାଜାଙ୍କୁ କହିଲେ, "ରାଜା! ପୁରସ୍କାର ପ୍ରସାଦଙ୍କୁ ମିଳୁ ।"

ଗୁରୁଙ୍କ କଥାରେ ରାଜା ଦ୍ୱିରୁକ୍ତି ନକରି ପ୍ରସାଦଙ୍କୁ ପୁରସ୍କାର ଦେଇଦେଲେ ।

ବେତାଳ ଟିକିଏ ଚୁପ୍ ରହି ପ୍ରଶ୍ନ କଲା, "ରାଜା ! ମୋର କିଛି ସନ୍ଦେହ ରହିଛି । ରାଜଗୁରୁ ହଠାତ୍ ନିଜ ମତ ପରିବର୍ତ୍ତନ କଲେ କାହିଁକି ? ଏହା ତାଙ୍କର ଖାମ୍ ଖିଆଲ ଭାବ ନୁହେଁ କି ? ଯଦି ଦୁଇ କବିଙ୍କ କବିତା ଏକା ସମାନ୍ତର ବୋଲି ରାଜଗୁରୁ ବୁଝିଥିଲେ, ତେବେ ବୟସ ଓ ଜ୍ଞାନଗରିମା ଦୃଷ୍ଟିରୁ ଦେବଦାସଙ୍କ

ସପକ୍ଷରେ ତାଙ୍କ ରାୟ ଦିବା ଉଚିତ ନୁହେଁ କି? ଜାଣିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ମାନବ ଚରିତ୍ର ବିଚିତ୍ର । ଦେବୀଦାସ ଯେଉଁ ପ୍ରସନ୍ନଙ୍କୁ ରାଜଦରବାରରେ ସ୍ଥାନ ଦେଇଥିଲେ, କାଳକ୍ରମେ ସେହି ପ୍ରସନ୍ନଙ୍କ ପ୍ରତି ତାଙ୍କର ଈର୍ଷା ଜାତ ହୋଇଥିଲା । ରାଜଗୁରୁଙ୍କ ରାୟର ବିଶେଷତ୍ୱ ବୁଝିବା ନିମନ୍ତେ ଆମକୁ ଗୋଟିଏ ଗୂଢ଼ ସତ୍ୟ ବୁଝିବାକୁ ହେବ । ଏହି ନିର୍ଦ୍ଦିଷ୍ଟ କବିତା ଲୋକଙ୍କ ଭିତରେ କଳହ ଭାବ ଦୂର କରିବା ନିମନ୍ତେ ଲେଖା ଯାଉ ବୋଲି ରାଜା କହିଥିଲେ । ଲୋକେ ଅହଙ୍କାରବଶତଃ କଳହ କରନ୍ତି । ଦେଖାଗଲା, ଦେବୀଦାସ ନିଜ ଅହଙ୍କାର ଉପରେ ବିଜୟ ଲାଭ କରି ନାହାନ୍ତି । ତେଣୁ ସେ କବିତା ଲେଖିଛନ୍ତି ଯେଉଁ ପ୍ରକାର ଚେତନାରେ, ସେ ଚେତନା ନିର୍ମଳ ନୁହେଁ । ପୁରସ୍କାର ଆଶାରେହିଁ ସେ ଲେଖିଥିଲେ । ସେଭଳି କବିତା ଭାଷା ଓ ଶୈଳୀ ଦୃଷ୍ଟିରୁ ଯେତେ ଉନ୍ନତ ହେଉ ନା କାହିଁକି, ଲୋକଙ୍କ ଉପରେ ତା'ର ପ୍ରଭାବ ଆଶାନୁରୂପ ହେବ ନାହିଁ । ଏଣେ ପ୍ରସନ୍ନ ଅତି ନମ୍ର ଭାବରେ ଲେଖିଥିଲେ । ତାଙ୍କ ଉଦ୍ଦେଶ୍ୟ ଥିଲା ଲୋକଙ୍କୁ ବେଦ ଉପନିଷଦର ମର୍ମ ବୁଝାଇବା, ପୁରସ୍କାର ଲାଭ ନୁହେଁ । ତେଣୁ ରାଜଗୁରୁ ବୁଝିଲେ, ସେ ଉପଯୁକ୍ତ ଚେତନାରେ ଥାଇ କବିତା ଲେଖିଛନ୍ତି ଏବଂ ସେ କବିତାର ପ୍ରଭାବ ଅଧିକ ହେବ । ଦେବୀଦାସ ଭଲ ମଣିଷ । କିନ୍ତୁ ତାଙ୍କର ଦୁର୍ବଳତା ଥିଲା ତାଙ୍କ ଅହଙ୍କାର । ସେ ଅହଙ୍କାର ଉପରେ ଆଘାତ ଲାଗିଲେ ତାଙ୍କରହିଁ ମଙ୍ଗଳ ହେବ ବୋଲି ରାଜଗୁରୁ ବୁଝିଥିଲେ ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ବନ୍ଧୁତା

ଗୋଟିଏ ଗାଁରେ ଦୁଇଜଣ ବନ୍ଧୁ ଥା'ନ୍ତି । ଜଣକ ନାମ ଥିଲା ଶିବ ଓ ଅନ୍ୟର ନାମ ଥିଲା ଶଙ୍କର । ଦୁଇଜଣଙ୍କ ବନ୍ଧୁତା ଏତେ ନିବିଡ଼ ଥିଲା ଯେ ଅନ୍ୟମାନେ ସେମାନଙ୍କୁ ଦେଖିଲେ ଇର୍ଷା କରୁଥିଲେ । ଶିବ ଥିଲା ଟିକିଏ ଚିଡ଼ଚିଡ଼ା ସ୍ୱଭାବର । ଟିକିଏ କଥା ହେଲେ ସହିପାରେ ନାହିଁ । କିନ୍ତୁ ଶଙ୍କରର ସ୍ୱଭାବ ଥିଲା ଅତି ଶାନ୍ତ । ଦିନେ ଶିବର ଘରେ ଭୋଜି ହେଉଥାଏ । ଅନେକ ବ୍ୟକ୍ତି ନିମନ୍ତ୍ରିତ ହୋଇ ଆସିଥାନ୍ତି । ତନ୍ମଧ୍ୟରେ ଅଶୋକ ନାମକ ବ୍ୟକ୍ତି ମଧ୍ୟ ଆସିଥାଏ । ସମସ୍ତଙ୍କୁ କଥା କଥାକେ ହସି ଉଡ଼ାଇବା ଓ ହଇରାଣ କରିବା ଥିଲା ଅଶୋକର ସ୍ୱଭାବ । କିନ୍ତୁ ଅନ୍ୟମାନେ କିଛି କହିଲେ ସେ ରାଗିଯିବ ।

କୌଣସି ଏକ କାରଣରୁ ଅଶୋକ ଆସି ଶିବ ପାଖରେ ପହଞ୍ଚିଲା ଓ ପଚାରିଲା, "କିହୋ ଶିବବାବୁ, ତମେ ତ କ'ଣ ବଡ଼ ଭୋଜଟାଏ ଦେଉଛ ! କଥା କ'ଣ ? ଏଥର ବୋଧହୁଏ ଫସଲ ବହୁତ ହୋଇଛି, ନୁହେଁ ?"

"ନାଁ ସେମିତି କିଛି ତ ନୁହେଁ । ବରଂ ଭୋଜି ଖାଇବା ଲୋକେ ମୋର ଭଲ ଫସଲ ହେଲେ ସେଥିରେ ନଜର ଦେବେ ନାହିଁ ସେଥିପାଇଁ ଭୋଜି ଦେଉଛି ।" ଶିବ କହିଲା ।

ଅଶୋକ ଏ ଉତ୍ତର ଶୁଣି ମନେ ମନେ ରାଗି ଯାଇ କହିଲା, "ହିଁ ସେଇଥିପାଇଁ ବୋଧେ ମୋର ଏବର୍ଷ ଭଲ ଫସଲ ହୋଇନାହିଁ । ମୁଁ ତ କାହାକୁ ଖାଇବାକୁ ଦେଇନାହିଁ !"

"ତା' ହେଲେ ତମେ କ'ଣ କହୁଛ ତୁମ ଫସଲ ମୋର ନଜର ଲାଗିବାରୁ ଖରାପ ହୋଇଗଲା ?" ଶିବ ରାଗି ଯାଇ କହିଲା ।

"ନାଁ ମୁଁ ତ ସେକଥା କହିନାହିଁ । ତମେହିଁ କହିଲ ଆମମାନଙ୍କର ନଜର ଲାଗିବା

ଗଣେଶ ବର୍ମା



ଉତ୍ସବରେ ତମେ ଭୋଜି ଦେଉଛ ।" ଅଶୋକ କହିଲା ।

ଏଇ କଥା ନେଇ କ୍ରମେ ଦୁହିଁଙ୍କର ଝଗଡ଼ା ଆରମ୍ଭ ହେଲା ଓ ଦୁହେଁ ରାଗି ଉଠି ପରସ୍ପରକୁ ଧାବନ ଦେବାରେ ଲାଗିଲେ । ପାଟି ଶୁଣି ନିମନ୍ତ୍ରିତ ଭଦ୍ରବ୍ୟକ୍ତିଗଣ ଚାରିପଟେ ଜମା ହୋଇଗଲେ । ଶଙ୍କର ଶୀଘ୍ର ସେଠାକୁ ଯାଇ ଶିବକୁ ଗୋଟାଏ ପଟକୁ ଟାଣି ନେଇ କହିଲା, "ଶିବ, ଏ ଘର ତୋର, ତୁ ସେମାନଙ୍କୁ ଖାଇବାକୁ ଡାକିଛୁ । ତୁ ଏପରି ରାଗିବା ଶୋଭାପାଏ ନାହିଁ । ଟିକିଏ ସହିଗଲେ କ'ଣ ହୁଅନ୍ତା ନାହିଁ ? ଏଇ ଛୋଟ କଥାକୁ ନେଇ ଗୋଟାଏ ଆନନ୍ଦ ଦିନରେ ଏପରି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବା କ'ଣ ସୁନ୍ଦର ? ତୁମ ଦୁହିଁଙ୍କ ଭିତରେ ଯଦି ପୂର୍ବରୁ କିଛି ଶତ୍ରୁତା ଥାଏ ତେବେ ଏ କ୍ଷେତ୍ରରେ ବରଂ ସେସବୁ ଭୁଲିଯିବା ଉଚିତ ।"

ଶଙ୍କରର ଏପରି କଥାରେ ସମସ୍ତେ ଖୁସି ହେଲେ ଓ ଶଙ୍କରକୁ ପ୍ରଶଂସା କଲେ । ଝଗଡ଼ା ତ ବନ୍ଦ ହୋଇଗଲା । କିନ୍ତୁ ଶିବ ମନ ଭିତରେ ଏକଥା ଗଣ୍ଠି କରି ରଖିଲା । ଭୋଜି ଶେଷ ହେବା ପରେ ଶିବ ଆଉ ଶଙ୍କର ସହିତ କଥାବାର୍ତ୍ତା କଲାନାହିଁ । ଯେଉଁଠି ଦେଖେ ମୁହଁ ବୁଲାଇ ଚାଲିଯାଏ । ଏମିତି କେତେଦିନ ଚାଲିଗଲା । ଦିନେ ଶଙ୍କର ଶିବ ଘରେ ପହଞ୍ଚି ଶିବର ସ୍ତ୍ରୀକୁ କହିଲା, "ଭାଉଜ, ଶିବ ମୋତେ ଦେଖିଲେ ମୁହଁ ବୁଲାଇ ଚାଲି ଯାଉଛି, କଥା କହୁନି, କ'ଣ ହୋଇଛି ?"

ଶିବର ସ୍ତ୍ରୀ କହିଲା; "ସେ ତୁମ ଉପରେ ରାଗିଛନ୍ତି । ସେଦିନ ସବୁ ଭଦ୍ରଲୋକଙ୍କ ଆଗରେ ତମେ ତାଙ୍କ ବ୍ୟବହାର ପସନ୍ଦ ନ କରି ଉପଦେଶ ଦେଲ ବୋଲି ତାଙ୍କୁ ବହୁତ ଅପମାନ ହେଲା । ତେଣୁ ସେ ଏପରି ବ୍ୟବହାର କରୁଛନ୍ତି ।"

"ଆଚ୍ଛା, ଏପରି କଥା ? ଆମର କେତେ ଦିନର ବନ୍ଧୁତ୍ୱକୁ ଏପରି ଏଇ ଟିକିଏ କଥାରେ ସେ ଭାଙ୍ଗି ଦେବାକୁ ଚାହୁଁଛି ପୁଣି ଅନ୍ୟ ଲୋକର କଥାରେ ? ସିଏ ନିଜେ ମତେ ଦୁଇଟା



ମାରିଥିଲେ ମଧ୍ୟ ମୁଁ ସହିଥା'ନ୍ତି ଏକଥା କ'ଣ ସେ ଜାଣେନାହିଁ ?" ଦୁଃଖିତ ହୋଇ ଶଙ୍କର କହିଲା ।

"ତମେ ତ ତାଙ୍କ ଦୁର୍ଗୁଣ ଜାଣିଛ । ଟିକେ କଥାରେ ରାଗିଯା'ନ୍ତି । ତମେ ମୋ ସହିତ ତାଙ୍କ ବିଷୟରେ ଆଲୋଚନା କରୁଛ ଶୁଣିଲେ ମୋ ଉପରେ ରାଗିବେ । ତମେ ନିଜେ ଚେଷ୍ଟା କରି ଏ କଥାର ସମାଧାନ କର ।" ଶିବର ସ୍ତ୍ରୀ କହିଲା ।

କିଛିଦିନ ପରେ ଶିବର ପୁଅ ହଠାତ୍ ବେମାର ହୋଇ ପଡ଼ିଲା । ଶଙ୍କର ଆୟୁର୍ବେଦ କିଛିଟା ପଢ଼ିଥାଏ ବୋଲି ଗ୍ରାମରେ ଯାହାର ଦେହ ଖରାପ ହୁଏ ତା' ପାଖକୁ ଔଷଧ ପାଇଁ ଆସନ୍ତି । ଶିବର ପରିବାର ସବୁବେଳେ ଶଙ୍କରଠାରୁହିଁ ଔଷଧ ଖାନ୍ତି । ଏବେ କିନ୍ତୁ ଶିବ ଶଙ୍କର ପାଖକୁ ନଯାଇ ବାହାର ବୈଦ୍ୟ ପାଖକୁ ଗଲା । ପୁଅ ଭଲ ହେଲା ନାହିଁ ।

କିଛି ଦିନ ଧରି ଯେତେ ଚିକିତ୍ସା ହେଲେ ମଧ୍ୟ ଫଳ କିଛି ହେଲା ନାହିଁ । ଏକ ଅଦ୍ଭୁତ ରୋଗ ଧରିଛି । ଏହିପରି ବିପଦ ସମୟରେ ଜଣେ ସାଧୁ ସେଠାରେ ଆସି ପହଞ୍ଚିଲେ । ଶିବ ଭାବିଲା ଏଇ ସାଧୁ ନିଶ୍ଚୟ ଭଲ କରିଦେବେ । ସେ ସାଧୁଙ୍କୁ ସବୁକଥା କହିଲା ।

ସାଧୁ ବିଦ୍ୟାକର ତା' ଘରକୁ ଯାଇ ପିଲାକୁ ଦେଖି କହିଲେ, "ଏ ରୋଗ ତୁମମାନଙ୍କ କୁକାର୍ଯ୍ୟ ଫଳରୁ ହୋଇଛି । ତୁମ ଭିତରେ ସ୍ୱାର୍ଥ, ମୋହ, ଗର୍ବ, ଦ୍ୱେଷ ଆଦି ଅଭିମାନାରେ ଅଛି ବୋଲି, ତାହାହିଁ ପିଲ ଦେହରେ ରୋଗ ଭାବରେ ଦେଖା ଦେଇଛି ।"

"ସାଧୁବାବା, ମୋ ବିଷୟରେ ହୁଏତ କିଏ ଆପଣଙ୍କୁ ଭୁଲ ଧାରଣା ଦେଇଛି । ମୁଁ ସବୁ ସହିନିଏ । ବିଶେଷତଃ ଏ ପରିସ୍ଥିତିରେ ପୁଅ ପାଇଁ ମୁଁ ସବୁ କିଛି କରିପାରେ ।"

"ତେବେ ଶୁଣ । ଏଠାରୁ ଆଠକୋଶ ଦୂରରେ ଶିବମନ୍ଦିର ଅଛି । ମୁଁ ଯେଉଁ ଔଷଧ ଦେଉଛି ସେ ପୁଡ଼ିଆଟି ହାତରେ ନେଇ ଠାକୁରଙ୍କ ବିଗ୍ରହରେ ସ୍ପର୍ଶ କରାଇ ଫେରିଆସ ।" ସାଧୁ କହିଲେ ଓ ପୁଡିଆଟି ଦେଲେ ।



ପୁଣି ସାଧୁ କହିଲେ, "ଆଉ ମନେରଖ ବାଟରେ କେଉଁଠି ବିଶ୍ରାମ କରିବ ନାହିଁ ଆଉ ମନରେ ଅନ୍ୟ ପ୍ରତି କୁଭାବନା ରଖିବ ନାହିଁ । ଦର୍ଶନ କରି ଔଷଧ ସ୍ପର୍ଶ କରାଇ ତତ୍‌କ୍ଷଣାତ୍ ଲେଉଟି ଆସିବ ।"

କେତେ ଘଣ୍ଟା ପରେ ଶିବ ଲେଉଟି ଆସିଲା ଔଷଧ ସହିତ । ସେ ସାଧୁଙ୍କୁ ପଚାରିଲା, "ସାଧୁବାବା, ଏବେ ମୁଁ ଏ ଔଷଧ ପୁଅକୁ ଖୁଆଇବି ?"

"ଆରେ, ରୁହ ଟିକିଏ । ପ୍ରଶ୍ନର ଉତ୍ତର ଦେଇସାର । ତୁମେ ଯିବା ପରେ ପରେ ମୁଁ ଲୋକଙ୍କଠାରୁ ପଚାରି ବୁଝିଛି ଯେ ତୁମେ ଅତ୍ୟନ୍ତ ଚଡ଼ା ଲୋକ ଓ ସ୍ୱାର୍ଥପର; ନିକଟ ଅତୀତରେ ତୁମେ ତୁମ ବନ୍ଧୁମାନଙ୍କ ସହିତ ବିନା କାରଣରେ ଝଗଡ଼ା କରିଛ । ସ୍ୱାର୍ଥପର ଲୋକର ପରିବାରରେ ରୋଗ ସର୍ବଦା ଲାଗି ରହିଥାଏ । ମୋର ସନ୍ଦେହ ହେଉଛି ହୁଏତ ଔଷଧ କାମ କରି ନପାରେ ।" ସାଧୁ କହିଲେ ।

"ସାଧୁବାବା, ଏସବୁ କଥା କିଏ ମୋ ନାମରେ ଆପଣଙ୍କୁ କହିଲା ? ଯେଉଁମାନେ ମୋ ପ୍ରତି ଈର୍ଷୁକ ସେମାନେ ମୋତେ ସହି ପାରନ୍ତି ନାହିଁ । ମୁଁ କିନ୍ତୁ ସମସ୍ତଙ୍କ ପ୍ରତି ସହାନୁଭୂତିଶୀଳ ।" ଶିବ କହିଲା ।

"ଆଚ୍ଛା, ତୁମ କଥା ଯଦି ଠିକ୍ ହୋଇଥାଏ ତେବେ ତୁମେ ତୁମ ବନ୍ଧୁଙ୍କ ସହିତ ଝଗଡ଼ା କରି କାହିଁକି ଅଲଗା ରହିଛ ? ଶିବ ମନ୍ଦିର ଏତେ ଦୂର । ସେଥିରେ ପୁଣି ପାଷାଣ ପ୍ରତିମା ତମେ ବିଶ୍ୱାସ କରି ଷୋଳକୋଶ ଦଉଡ଼ିଗଲ । ମୁଁ ଜଣେ ଅପରିଚିତ ବ୍ୟକ୍ତି ମୋତେ ବିଶ୍ୱାସ କରି ମୋ କଥା ମାନିଗଲ । ଆଉ ପିଲାବେଳରୁ ଗଢ଼ି ଉଠିଥିବା ବନ୍ଧୁତା ତମେ ଏତେ ଶୀଘ୍ର ଏଇ କଥା ଟିକିଏରେ କାଟି ଦେଇ ପାରିଲ ? ଏଇ ତମର ସହନଶୀଳତାର ପରିଚୟ ?" ସାଧୁ କହିଲେ ।

"ସାଧୁବାବା, ଆପଣ ଯଦି ମୋର ସହନଶୀଳତାର ପ୍ରମାଣ ନେବାକୁ ଚାହାନ୍ତି ଆଦେଶ କରନ୍ତୁ ମୁଁ କାର୍ଯ୍ୟରେ କରି ଦେଖାଇ ଦେବି ।" ଶିବ କହିଲା ।

"ମୁଁ ଶୁଣିଲି ତମେ ତମର ଜଣେ ଶୁଭକାଂକ୍ଷୀ ବନ୍ଧୁଙ୍କ ସହ ଝଗଡ଼ା କରି ବନ୍ଧୁତ୍ୱ କଟାଇ ଦେଇଛ । ତମର ଯଦି ଦମ୍ଭ ଓ ଅଭିମାନ ନଥାଏ, ତେବେ ତା' ଘରକୁ ଯାଇ ତା' ପାଖରେ କ୍ଷମା ପ୍ରାର୍ଥନା କରି ମିଳିମିଶି ହୋଇଯାଅ, ନହେଲେ ପୁଅର ଔଷଧ କାମ କରିବ ନାହିଁ ।" ସାଧୁ କହିଲେ ।

"ଠିକ୍ ଅଛି, ପୁଅର ଜୀବନ ରକ୍ଷା ପାଇଁ ମୁଁ ସବୁ କରିପାରେ । ଦେଖନ୍ତୁ ମୁଁ ଏବେ ଯାଇ ସବୁ ଠିକ୍ କରି ଦେଉଛି ।" କହିଲା ଶିବ ।

"ନା, ନା, ଶିବ ତମେ ଯଥେଷ୍ଟ ରାସ୍ତା ଯାଇ ଫେରିଛ, ତମକୁ ଦୂରକୁ ପଠାଇ କଷ୍ଟଦେବା ମୋର ଇଚ୍ଛା ନୁହେଁ । ପ୍ରମାଣ ଏଇଠି ହେବ । ଆସ ।" କହି ସାଧୁ ମୁହଁରୁ ମିଛ ଦାଢ଼ିନିଶ କାଢ଼ିଦେଲେ । କହିବା ବାହୁଲ୍ୟ, ଶଙ୍କରହିଁ ସାଧୁବାବାର ଛଦ୍ମବେଶରେ ସେଠାକୁ ଆସିଥିଲା ।

ଶିବ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ଆରେ ତୁ ?" କହି ଆନନ୍ଦରେ ଆସି ଶଙ୍କରକୁ କୁଣ୍ଢାଇ ପକାଇଲା ଓ କହିଲା, "ମୋତେ ଭାଇ କ୍ଷମାକର । ସବୁ ମୋରି ଦୋଷ । ଏବେ ପୁଅକୁ ବଞ୍ଚାଇ ଦେ ।"

"ପାଗଳ ହେଲୁ ନା କ'ଣ ? ତୋତେ ବାଟକୁ ଆଣିବାକୁ ମୁଁ ଓ ଭାଉଜ ଏ ନାଟକ ରଚନା କରିଥିଲୁ । ପୁଅ ତିନିଦିନ ହେଲା ପୁରା ଭଲ ହେଲାଣି, ମୋ ଔଷଧରେ । ମୋ କଥା ମାନି ସେ ଶୋଇ ରହିଛି ।" ଏହା କହି ସେ ପୁଅକୁ ଚାହିଁ କହିଲା, "ବାପ ମୁନ୍ନା, ଉଠି ଆସ ତ । ତୋର ପାରିଶ୍ରମିକ ଚକୋଲେଟ ନେଇ ଯା । ଏବେ ତୋର ଭୂମିକା ଶେଷ ।"

ଏକ ସମୟରେ ଶିବ, ତା' ସ୍ତ୍ରୀ, ଶଙ୍କର ଓ ମୁନ୍ନା ସମସ୍ତେ ହୋ ହୋ କରି ହସି ଉଠିଲେ । ପୁଣି ଦୁହିଁଙ୍କର ମିତ୍ରତା ବଢ଼ି ଉଠିଲା, ଏଥରକ ସେମାନଙ୍କ ମିତ୍ରତା କେବେ ଭାଙ୍ଗିବାର କେହି ଦେଖିନି । ଦୁହେଁ ଜୀବନ ସାରା ବନ୍ଧୁ ହୋଇ ଖୁସିରେ ରହିଲେ ।





# ମଦ୍ୟପାନର ପରିଣାମ

ବ୍ରହ୍ମଦତ୍ତ ଯେତେବେଳେ କାଶୀରେ ରାଜତ୍ୱ କରୁଥା'ନ୍ତି ସେତେବେଳେ ବୋଧିସତ୍ତ୍ୱ ଏକ ପବିତ୍ର ବ୍ରାହ୍ମଣ ପଣ୍ଡିତଙ୍କ ପରିବାରରେ ଜନ୍ମ ନେଲେ । ବିଂଶବର୍ଷ ବୟସରେ ପଦାର୍ପଣ କରିବାର ବହୁ ପୂର୍ବରୁ ସେ ନାନା ଶାସ୍ତ୍ରରେ ପାରଦର୍ଶିତା ଲଭ କରିଥିଲେ ।

ବୋଧିସତ୍ତ୍ୱଙ୍କର ମାତା ପିତା ତାଙ୍କୁ ବିବାହ ଦେବାପାଇଁ ଚାହିଁଲେ । କିନ୍ତୁ ସେ ବିବାହ ନ କରି ସନ୍ନ୍ୟାସ ବ୍ରତ ନେଇ ହିମାଳୟକୁ ଚାଲିଗଲେ । ସେଠାରେ ସେ ଏକ ସୁନ୍ଦର ଆଶ୍ରମ କରି ରହିଲେ ।

ଅନେକ ଦିନ ପରେ, ଥରେ ସେ ଶିଷ୍ୟଗଣ ପରିବେଷ୍ଟିତ ହୋଇ ତୀର୍ଥଯାତ୍ରା କଲେ । ସେ ଶ୍ରାବସ୍ତୀ, ଭଦ୍ରାବତୀ ଓ ଅବଶେଷରେ ଅମ୍ବତୀର୍ଥରେ ପହଞ୍ଚିଲେ । ସେହି ତୀର୍ଥରେ ଜଣେ ମୁନିଙ୍କର ଆଶ୍ରମ ଥିଲା । ସେଇ ଆଶ୍ରମରେ ଅମ୍ବକର୍ଣ୍ଣିକ ନାମକ ଏକ ଭୟଙ୍କର ବିଷଧର ସର୍ପ ରହୁଥାଏ । ଗ୍ରାମବାସୀମାନେ ବୋଧିସତ୍ତ୍ୱ ଓ ତାଙ୍କ ଶିଷ୍ୟମାନଙ୍କୁ ସର୍ପ ବିଷୟରେ ସାବଧାନ କରାଇ ଦେଇ କହିଲେ ଯେ ଯେପରି ସେମାନେ ସେ ଆଶ୍ରମରେ ପ୍ରବେଶ ନ କରନ୍ତି । ବୋଧିସତ୍ତ୍ୱ ମୌନ ରହିଲେ ।

ବୋଧିସତ୍ତ୍ୱଙ୍କର ଅନ୍ୟତମ ଶିଷ୍ୟ ସାଗତ-ସ୍ଥବିର ମନ୍ତ୍ରଶାସ୍ତ୍ରରେ ଥିଲେ ପ୍ରବୀଣ । ଆହୁରି ମଧ୍ୟ ସେ ଥିଲେ ଅସାଧାରଣ ସାହସୀ । ସେ ବୋଧିସତ୍ତ୍ୱ ଓ ଅନ୍ୟାନ୍ୟ ଗୁରୁଭାଇଙ୍କୁ ନ କହି ସେହି ଆଶ୍ରମକୁ ସିଧା ଚାଲିଲେ । ସେତେବେଳେ ଆଶ୍ରମରେ ମୁନି ନ ଥିଲେ । ସାଗତସ୍ଥବିର ଆଶ୍ରମରେ ପ୍ରବେଶ କରି ଗୋଟାଏ ଆସନ ପକାଇ ଘରର ମଝିରେ ବସି ପଡିଲେ । ତତ୍‌କ୍ଷଣାତ୍ ପୂର୍ବୋକ୍ତ ସର୍ପ ଆସି ତାଙ୍କ ସମ୍ମୁଖରେ ଫଣା ଟେକି ଛିଡ଼ା ହେଲା ।



ସାଗତସ୍ଥବୀର କିଛି ବି ବିଚଳିତ ହେଲେ ନାହିଁ, ବରଂ ପଚାରିଲେ, "କ'ଣ ତୁମ ନାମ, ଅମ୍ବତୀର୍ଥିକ ?" ଏକଥା ଶୁଣିବା ମାତ୍ରେ ସାପ ଫୁତ୍କାର କରିବାକୁ ଲାଗିଲା ଓ ତା' ମୁହଁରୁ କଳାଧୂଆଁ ବାହାରିଲା। ସ୍ଥବୀର ମଧ୍ୟ ନିଜ ମୁହଁରୁ କଳାଧୂଆଁ ବାହାର କଲେ। ତା'ପରେ ସାପ ମୁହଁରୁ ଅଗ୍ନି ବାହାରିଲା। ସ୍ଥବୀର ମଧ୍ୟ ଅନୁରୂପ କଲେ। ଏହିପରି କିଛି ସମୟ ଧରି ପରସ୍ପର ପରସ୍ପରକୁ ନିଜର ସାମର୍ଥ୍ୟ ଓ ଶକ୍ତି ଦେଖାଇବାକୁ ଲାଗିଲେ। ସ୍ଥବୀରଙ୍କର ନିର୍ଭୟତା ଦେଖି ସାପ ନିଜ ଫଣାକୁ ତଳକୁ କରି ସେଠାରୁ ବୁଲି ପଡି ଧୀରେ ଧୀରେ ଚାଲିବାକୁ ଲାଗିଲା। ସ୍ଥବୀର କିନ୍ତୁ ହଠାତ୍ ତା'ର ଲାଞ୍ଜ ଧରି ଟାଣି ଆଣି ପଚାରିଲେ, "ଅମ୍ବତୀର୍ଥିକ, ମୁଁ ଜାଣେ ଏ ତୀର୍ଥରେ ସ୍ନାନ କରିବାକୁ ଆସିଥିବା କେତେକ ଲୋକ ତୋ ଯୋଗୁ ପ୍ରାଣ ଦେଇଛନ୍ତି।" ଏତକ କହି ସେ ବଳପୂର୍ବକ ଅମ୍ବତୀର୍ଥିକର ବିଷଦାନ୍ତ ସବୁ ଝାଡ଼ି ଦେଇ ତାକୁ ଛାଡ଼ି ଦେଲେ।

ଏହି ଘଟଣା ପରେ ବୋଧିସତ୍ତ୍ୱ ଓ ଶିଷ୍ୟଗଣ ଯାଇ କୌଶାମ୍ବି ନଗରରେ ପହଞ୍ଚିଲେ। ସର୍ପ ବିଷୟକ ଘଟଣା ଚାରିଆଡ଼େ ପ୍ରଚାର ହୋଇଗଲା; କୌଶାମ୍ବି ନଗରର ଲୋକମାନେ ବୋଧିସତ୍ତ୍ୱଙ୍କୁ ଓ ତାଙ୍କ ଶିଷ୍ୟଗଣଙ୍କୁ ଖୁବ୍ ସମ୍ବର୍ଦ୍ଧନା କଲେ।

ପରଦିନ ସକାଳେ, ସେହି ନଗରର କେତେକ ଅଧିବାସୀ ସ୍ଥବୀରଙ୍କ ପାଖରେ ପହଞ୍ଚିଲେ। ସେତେବେଳେ ସ୍ଥବୀର କେତେକ ଗୁରୁଭାଇଙ୍କ ସହିତ ଏକ ବୃକ୍ଷଛାୟାରେ ବସିଥିଲେ। ସେମାନେ ତାଙ୍କୁ ପ୍ରଣାମ କରି କହିଲେ, "ଆପଣ ତ ହିମାଳୟରୁ ଆସିଛନ୍ତି। ସେଠି ଅନେକ ଜିନିଷ ମିଳିବା କଷ୍ଟ। ଯଦି କିଛି ଜିନିଷ ଆପଣଙ୍କର ଦରକାର ହୁଏ ତ ଆମକୁ କହନ୍ତୁ। ଆମେ ତୁରନ୍ତ ଆଣି ଦେବୁ।"

ସ୍ଥବୀର ଚୁପ୍ ରହିଲେ। ଅନ୍ୟ ଗୁରୁଭାଇମାନେ କହିଲେ, "ଭଦ୍ରଜନେ, ଆମେ ଏକ ଦୁର୍ଲଭ ମଦିରା ପାନ କରିବାକୁ ଚାହୁଁଛୁ। ତମେମାନେ ଯଦି ଏହା ପାଇବ ତେବେ ପଠାଇ ଦେବ।"

ସେ ଲୋକମାନେ ବିଦାୟ ନେଇ ଚାଲିଗଲେ । ଯେଉଁ ଶିଷ୍ୟମାନେ ଦୁର୍ଲଭ ମଦ୍ୟ କଥା କହିଥିଲେ, ସେମାନେ ଆଧ୍ୟାତ୍ମିକ ଜ୍ଞାନକୁ ବୁଝାଇଥିଲେ । କିନ୍ତୁ ଗ୍ରାମବାସୀମାନେ ସେକଥା ନ ବୁଝି ସହରରେ କିଛି ଭଲ ମଦ୍ୟ ସଂଗ୍ରହ କଲେ । ସେମାନେ ଆସି ସେ କଥା କହିବାରୁ ବୁଦ୍ଧଙ୍କ ଶିଷ୍ୟମାନେ ହସିଲେ । କିନ୍ତୁ ସ୍ଥବିର ମନେ ମନେ କୌତୁହଳୀ ହୋଇ ସେମାନଙ୍କ ସହ ଯିବାକୁ ପ୍ରସ୍ତୁତ ହେଲେ ।

ସେମାନେ ସ୍ଥବିରଙ୍କୁ ନେଇଗଲେ । ସେ ମଦ୍ୟପାନ କଲେ ଓ ନିଶାଗ୍ରସ୍ତ ହୋଇ ଭୂମି ଉପରେ ଲୋଟି ପଡ଼ିଲେ । ଗୁରୁଭାଇମାନେ ତାଙ୍କର ଏହି ଦୁରବସ୍ଥା ଦେଖି ତାଙ୍କୁ ଟେକି ନେଇ ଗୁରୁଙ୍କ ପାଦ ପାଖରେ ଲୋଟାଇ ଦେଲେ ଯେପରି ତାଙ୍କର ମଥା ଗୁରୁଙ୍କ ପାଦକୁ ସ୍ପର୍ଶ କରିବ ।

ନିଶାଗ୍ରସ୍ତ ସ୍ଥବିର ଏକଥା ଦେଖି ରାଗିଗଲେ ଓ ଓଲଟି ପଡ଼ି ନିଜ ପାଦ ଗୁରୁଙ୍କ ଆଡ଼କୁ କରି ପଡି ରହିଲେ । ଏକଥା ଦେଖି ବୋଧିସତ୍ତ୍ୱ ହସିଲେ ଅନ୍ୟ ଶିଷ୍ୟମାନଙ୍କୁ ପଚାରିଲେ, "ଅମ୍ବତୀର୍ଥରେ ଭୟଙ୍କର ସର୍ପକୁ ଦମନ କରିବାବାଲା ଲୋକ କ'ଣ ଏଇ ? ଏପରି ଦୁରବସ୍ଥାରେ ପଡ଼ିଛି ? ହାୟ, ଇଏ ଏବେ ଚ ବିଷହୀନ ଛୋଟ ଜଳସର୍ପଟିଏ ସୁଦ୍ଧା ବଶ କରିପାରିବ ନାହିଁ ।"

"ତାହାହେଲେ ତମେ ଏ ଘଟଣାକୁ କେବେ ଭୁଲ ନାହିଁ । ମଦିରାପାନ ଯେ କେବଳ ନିଶାଗ୍ରସ୍ତ କରାଏ ତାହା ନୁହେଁ, ଆହୁରି ମଧ୍ୟ ଚିତ୍ତଭ୍ରମ କରାଏ । ତେଣୁ ମନେରଖ ଆଜିଠାରୁ କୌଣସି ସନ୍ନ୍ୟାସୀ ଏହା ସ୍ପର୍ଶ ସୁଦ୍ଧା କରିବ ନାହିଁ ।" ବୋଧିସତ୍ତ୍ୱ ଗମ୍ଭୀର ହୋଇ କହିଲେ ।

ମଦ୍ୟନିଶା ଛାଡ଼ିଗଲା ପରେ ସ୍ଥବିର ଉଠି ପଡ଼ି ବୋଧିସତ୍ତ୍ୱଙ୍କ ପାଦରେ ପଡି ବହୁ ପଶ୍ଚାତ୍ତାପ କରିବାକୁ ଲାଗିଲେ । ତା'ପରେ ବୋଧିସତ୍ତ୍ୱ ତାଙ୍କୁ ଉଠାଇଲେ ଓ ମଦ୍ୟପାନର କୁପରିଣାମ ବିଷୟରେ ବୁଝାଇଲେ ।






ଭାରତର ନଦନଦୀ

# ସରସ୍ୱତୀ

ଋଷି ଗୌତମଙ୍କର ତିନି ପୁତ୍ର ଥିଲେ । ଏକତ, ଦ୍ୱିତ ଏବଂ ତ୍ରିତ । ସାନ ତ୍ରିତ ନିଜର ବୁଦ୍ଧି, ବିଦ୍ୟା ଓ ଆଚରଣ ଯୋଗୁଁ ସମସ୍ତଙ୍କର ପ୍ରିୟ ହୋଇ ପାରିଥିଲେ । ଋଷିମାନେ ତ୍ରିତର ବହୁତ ପ୍ରଶଂସା କରୁଥିଲେ ।

କ୍ରମେ ଗୌତମ ଋଷିଙ୍କର ତିନି ପୁତ୍ରଯାକ ବଡ଼ ହେଲେ । ପରେ ଦୂରରେ ଥିବା ଋଷିଙ୍କର ଶିଷ୍ୟମାନଙ୍କ ସହ ଦେଖା କରିବା ନିମନ୍ତେ ତିନିଜଣଯାକ ଋଷିପୁତ୍ର ଆଶ୍ରମରୁ ବାହାରିଗଲେ । ଶିଷ୍ୟମାନେ ସେ ତିନିଜଣଙ୍କୁ ବହୁତ ଆଦର ଅଭ୍ୟର୍ଥନା ଜଣାଇଲେ ଏବଂ ପ୍ରଚୁର ଗୋଧନ ଏବଂ ଅନ୍ୟାନ୍ୟ ଉପହାର ଦେଲେ ।





ସେସବୁ ସମ୍ପଦ ଧରି ତିନି ଋଷିପୁତ୍ର ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଗୋଟିଏ ଶୁଭମୁହୂର୍ତ୍ତ ଆସୁଥିଲା ବୋଲି ସେମାନେ ଜାଣିଥିଲେ । ସେତେବେଳେ ଯଜ୍ଞ କଲେ ଅନେକ ପ୍ରକାର ସିଦ୍ଧି ମିଳିବ । ତେଣୁ ସେମାନେ ଯଜ୍ଞ କରିବାକୁ ନିଷ୍ପତ୍ତି କରି ଉପଯୁକ୍ତ ସ୍ଥାନ ଖୋଜୁଥିଲେ ।



ଦୁଇ ବଡ଼ଭାଇ ନିତକୁ ବହୁତ ଇର୍ଷା
କରୁଥିଲେ । ବାଟରେ ଦୁହେଁ ନିତକୁ
ସେମାନେ ପାଇଥିବା ଧନସମ୍ପଦରୁ
ବଞ୍ଚିତ କରିବାକୁ ସ୍ଥିର କଲେ । ନିତ
ଅନ୍ୟମନସ୍କ ଭାବରେ ବାଟ ଚାଲୁଥାଏ ।
ସେ ଦୁହିଁଙ୍କ ଷଡ଼ଯନ୍ତ୍ର ବିଷୟରେ ତାକୁ
କିଛି ଜଣା ନଥାଏ ।

ଏକ ବୁଦା ମୂଳରେ ଗୋଟାଏ ହେଟା
ବସି ତିନିଜଣଙ୍କୁ ଲକ୍ଷ୍ୟ କରୁଥାଏ ।
ଏକକ ଏବଂ ଦ୍ୱିତ ସେ ହେଟାକୁ ଦୂରରୁ
ଦେଖି ପକାଇ ସଙ୍ଗେ ସଙ୍ଗେ ଗୋଟାଏ
ଗଛ ଚଢିଗଲେ । କିନ୍ତୁ ନିତ ଆପଣା
ଚିନ୍ତାରେ ମଗ୍ନ ଥାଇ ସେ ହେଟା
ବିଷୟରେ କିଛି ଜାଣିପାରି ନଥାଏ ।
ହଠାତ୍ ହେଟା ତା' ଆଗକୁ ବାହାରି
ପଡ଼ିଲା ।






ନିତ ଚମକିପଡ଼ି ହେଟା କବଳରୁ ଖସି
ଯିବାକୁ ଚେଷ୍ଟା କଲା । କିନ୍ତୁ ହେଟା
ଆଗରେ ସେ ବା କେତେ କ୍ଷିପ୍ରଗତିରେ
ଦୌଡ଼ି ପାରନ୍ତା ? ସେ ଗୋଟାଏ
ଖାତ ଭିତରକୁ ଖସି ପଡ଼ିଲା । ହେଟା
କିଛି ସମୟ ସେ ଖାତ ମୁହଁ ଚାରିକଡ଼େ
ଚକ୍କର ଦେଇ ତା'ପରେ ସେଠାରୁ
ପଳାଇଗଲା । ନିତ ଖାତ ଭିତରୁ
ତାକୁ ଉଦ୍ଧାର କରିବା ନିମନ୍ତେ
ଭାଇମାନଙ୍କୁ ଡାକ ପକାଇଲା ।

କିନ୍ତୁ ଭାଇମାନେ ଶୁଣିଲେ ନାହିଁ । ହେଠା ସେଠାରୁ ଅଦୃଶ୍ୟ ହେବା ପରେ ସେମାନେ ତଳକୁ ଆସି ଦେଖିଲେ ତ୍ରିତ ତା' ନିଜ ଥଳିଟି ଖାତ ମୁହଁରେ ପକାଇ ଦେଇ ଯାଇଛି । ସେମାନେ ସେ ଥଳିଟି ଧରି ତରବରରେ ସେଠାରୁ ଚାଲିଗଲେ । ତ୍ରିତର ଡାକ ଶୁଣି ମଧ୍ୟ ଶୁଣିଲେ ନାହିଁ ।






ଏଣେ ଯଜ୍ଞ ମୁହୂର୍ତ୍ତ ପାଖେଇ ଆସୁଥାଏ । ତ୍ରିତ ବଡ଼ ବ୍ୟାକୁଳ ହେଲା, କିନ୍ତୁ କରିବ ବା କ'ଣ ? ତେବେ ସେ ଯେଉଁ ପରିସ୍ଥିତିରେ ଅଛି, ସେହି ପରିସ୍ଥିତିରେହିଁ ଯଜ୍ଞ କରିବାକୁ ମନସ୍ଥ କଲା । ଖାତ ଭିତରେ ଥିବା ଦୁବ-ଦଳକୁ ସେ ଅଗ୍ନି ବୋଲି ଧାରଣା କଲା । ଗୋଟାଏ ଗାତରେ ଥିବା ସାମାନ୍ୟ ପାଣିକୁ ସେ ଘୃତ ବୋଲି ଜ୍ଞାନ କଲା ।

ତେଣେ ଦୁଇ ବଡ଼ ଭାଇ ଅନ୍ୟ ଏକ ସ୍ଥାନରେ ଯଜ୍ଞର ଆୟୋଜନ କଲେ । ପାଖ ଗାଁରୁ ଆବଶ୍ୟକୀୟ ସାମଗ୍ରୀ ସଂଗ୍ରହ କରି ସେମାନେ ମନ୍ତ୍ର ଉଚ୍ଚାରଣ କରି ଆହୂତି ଦେଲେ । କିନ୍ତୁ ସେମାନଙ୍କ ମନରେ ଶ୍ରଦ୍ଧା ବା ଭକ୍ତି ନଥିଲା । ମନ୍ତ୍ର ମଧ୍ୟ ଶୁଦ୍ଧ ଭାବରେ ସେମାନେ ଉଚ୍ଚାରଣ କରିପାରୁ ନଥିଲେ । ତେଣୁ ସେମାନଙ୍କ ଯଜ୍ଞ ନିଷ୍ଫଳ ହେଉ ।





ତ୍ରିତର ଶ୍ରଦ୍ଧା ଭକ୍ତିରେ ମୁଗ୍ଧ ହୋଇ ତା' ଆଗରେ କନ୍ତୁ ଦେବତାମାନେ ପ୍ରତ୍ୟକ୍ଷ ହେଲେ ଓ ତାଙ୍କୁ ବର ମାଗିବାକୁ କହିଲେ । ତ୍ରିତ କରଯୋଡ଼ି କହିଲା, ସେ ଖାତରେ ଥିବା ଜଳ ଯେପରି ଯଜ୍ଞର ଉପଯୁକ୍ତ ହେଲା ଭଳି ପବିତ୍ର ହୁଏ । ତା'ର ଯାହା ହେଲେ ମଙ୍ଗଳ ହେବ, ଦେବତାମାନେହିଁ ତାକୁ ସେ ବର ଦିଅନ୍ତୁ—ଏହାହିଁ ହେଲା ତା'ର ବକ୍ତବ୍ୟ ।

ହଠାତ୍ ବିପୁଳ ଜଳରାଶି ସେ ଖାତରୁ ନିର୍ଗତ ହୋଇ ତ୍ରିତଙ୍କୁ ଖାତ ଉପରକୁ ଉଠାଇ ଦେଲା । ତା'ପରେ ଉଚ୍ଛଳ ଜଳଧାରା ନଦୀ ରୂପରେ ସେଠାରୁ ପ୍ରବାହିତ ହେବାକୁ ଲାଗିଲା । ଏହି ନଦୀର ନାମ ହେଲା ସରସ୍ୱତୀ । ତ୍ରିତ ତା' ନିଜ ତପସ୍ୟା ବଳରେ ସରସ୍ୱତୀ ନଦୀକୁ ଭୂଗର୍ଭରୁ ବାହାରକୁ ଆଣି ପାରିଥିବା ହେତୁ ଗଭୀର ସନ୍ତୋଷ ଅନୁଭବ କଲା ।






ବୈଦିକ ଯୁଗର ଋଷିମାନେ ସରସ୍ୱତୀ ନଦୀକୁ କେତେ ପ୍ରକାରେ ବନ୍ଦନା କରିଛନ୍ତି । ଏହି ପବିତ୍ର ନଦୀ କୂଳରେ କେତେ ଋଷି ତପସ୍ୟା କରିଛନ୍ତି । କାଳକ୍ରମେ ସରସ୍ୱତୀ ନଦୀ ଭୂପୃଷ୍ଠରୁ ଅନ୍ତର୍ହିତ ହୋଇ ଭୂଗର୍ଭରେ ରହିଲେ । ଏଲାହାବାଦ ନିକଟବର୍ତ୍ତୀ ପ୍ରୟାଗଠାରେ ସରସ୍ୱତୀ ଗଙ୍ଗା ଓ ଯମୁନା ସହ ଏକତ୍ର ହୋଇଛନ୍ତି । ସେ ପୁଣ୍ୟ ସ୍ଥାନକୁ ତ୍ରିବେଣୀ ସଙ୍ଗମ କୁହାଯାଏ ।



# ଦୋଷ କାହାର?

ଯେଉଁ ସମୟର କଥା କୁହା ଯାଉଛି, ସେତେବେଳେ ସୀତାପୁର ରାଜ୍ୟରେ ରାଜୁତି କରୁଥିଲେ ରାଜା ମିହିର ବର୍ମା ।

ତାଙ୍କ ରାଜଧାନୀରେ ଜଣେ ସାଧୁ ଆସି ଦେଖା ଦେଲେ । ନିଜକୁ ସେ ସାଧୁ ସ୍ୱାମୀ ନିର୍ମଳାନନ୍ଦ ବୋଲି ପରିଚୟ ଦେଉଥାନ୍ତି । ତାଙ୍କ ସହ ଥିଲେ ଦୁଇଜଣ ଶିଷ୍ୟ । କ୍ରମେ ପ୍ରଚାର ହୋଇଗଲା ଯେ ସାଧୁଜୀଙ୍କର ଗୁଣ ବହୁତ । ସେ ଲୋକଙ୍କୁ ଧନୀ କରିଦେଇ ପାରନ୍ତି, ମକଦ୍ଦମାରେ ବିଜୟ ଲାଭ କରାଇ ଦେଇ ପାରନ୍ତି ଏବଂ କାହାରି କିଛି ରୋଗବ୍ୟାଧି ଥିଲେ ତାହାର ନିରାକରଣ କରି ପାରନ୍ତି ।

ସହଜେ ତ ରାଜା ସାଧୁସନ୍ଥଙ୍କ ପ୍ରତି ସମ୍ମାନ ଦେଖାଉଥାନ୍ତି, ପୁଣି ନିର୍ମଳାନନ୍ଦ ଜଣେ କରିତ୍‌କର୍ମା ସାଧୁ ବୋଲି ଶୁଣି ସେ ତାଙ୍କୁ ସମ୍ବର୍ଦ୍ଧନା ଦେବାକଥା ଚିନ୍ତା କରିବାକୁ ଲାଗିଲେ ।

କିନ୍ତୁ ସେତିକିବେଳେ ସେ ତାଙ୍କ ଗୁପ୍ତଚର ବାହିନୀର ମୁଖ୍ୟଠାରୁ ଭିନ୍ନ ପ୍ରକାର ସମ୍ବାଦ ପାଇଲେ । ଗୁପ୍ତଚର କହିଲେ କି ନିର୍ମଳାନନ୍ଦ ଗୋଟାଏ ଭଣ୍ଡ । ସେ ପୂର୍ବେ ବେପାର କରି ଲୋକଙ୍କୁ ଅନେକ ପ୍ରକାରେ ଠକିଛି । ପରେ ଲୋକେ ତା' ଠକାମି ବୁଝିପାରି ତା' ଉପରେ ଦାଉ ସାଧିବାକୁ ବସିବାରୁ ସେ ଘର ଛାଡି ପଳାଇ ଯାଇ ସାଧୁ ସାଜିଛି ।

ରାଜା ଯେତେବେଳେ ବୁଝିଲେ ଯେ ସତରେ ସେ ସାଧୁ ଗୋଟିଏ ଭଣ୍ଡ, ସେ ସାଧୁକୁ ଓ ତା'ର ଦୁଇ ଚେଲାକୁ ଧରି ଆଣିଲେ ।

"ତମେ ମୋ ପ୍ରଜାଙ୍କୁ ଧୋକାଦେଇ ସେମାନଙ୍କୁ ଶୋଷଣ କରୁଛ ! ତମେ ଦଣ୍ଡ ପାଇବା ଉଚିତ !" ରାଜା ଏହା କହି ନିର୍ମଳାନନ୍ଦ ଯେ ଭଣ୍ଡାମି କରୁଛି ଓ ପ୍ରକୃତରେ ସେ ସାଧୁ ନୁହେଁ, ବେପାରୀ, ଏହାର ପ୍ରମାଣ

ଶ୍ରୀମତୀ ଆଶାଲତା



ଉପସ୍ଥାପନ କଲେ । ଭଣ୍ଡ ସାଧୁ ବୁଝିପାରିଲା ଯେ ତା' ସ୍ୱରୂପ ରାଜାଙ୍କ ଆଗରେ ଧରା ପଡ଼ିଯାଇଛି । ସେ ରାଜାଙ୍କୁ ଠକିଦେଇ ଖସିଯାଇ ପାରିବ ନାହିଁ । ସେତେବେଳେ ସେ ମୃଦୁହାସ୍ୟ କରି କହିଲା, "ମହାରାଜ! ଆପଣ ଯାହା କହୁଛନ୍ତି, ତାକୁ ମୁଁ ଅସ୍ୱୀକାର କରିବି ନାହିଁ । କିନ୍ତୁ ମୋତେ ଆପଣ ଦଣ୍ଡ ଦେବାର ଆବଶ୍ୟକତା ନାହିଁ ।"

"ତମେ ଲୋକଙ୍କ ଆଗରେ ଭଣ୍ଡାମି କଲ, ଅଥଚ ଦଣ୍ଡ ପାଇବ ନାହିଁ? ଏହା କିପରି କଥା?" ରାଜା ପଚାରିଲେ ।

"ମହାରାଜ, ଦୋଷ ମୋର ନୁହେଁ, ଲୋକଙ୍କର । ଲୋକେ ମୋ ପାଖକୁ ଆସନ୍ତି । ସେମାନେ ଆସନ୍ତି ସେମାନଙ୍କର ନାନା ପ୍ରକାର ବାସନା ପୂରଣ ପାଇଁ । ସେମାନଙ୍କ ଭିତରୁ ଯେଉଁମାନେ ଧନୀ ସେମାନେ ମୋତେ ନାନା ପ୍ରକାର ଉପହାର ଦିଅନ୍ତି, ଅର୍ଥ ବି ଦିଅନ୍ତି । ଯେଉଁମାନେ ଗରିବ, ସେମାନେ କିଏ ମୁଠାଏ ଚାଉଳ ତ କିଏ ଗୋଟାଏ ନଡ଼ିଆ ଦେଇଯାନ୍ତି । ଯିଏ ଅନ୍ୟାୟ କାମନା ବାସନା ନେଇ ଆସୁଛି ଓ ପାଉଛି ବୋଲି ବେଶି ଟଙ୍କା ଦେଇ ଯାଉଛି, ତାକୁ ମୁଁ ଠକିଲି ବୋଲି କାହିଁକି ଭାବୁଛନ୍ତି? ଯିଏ ଗରିବ ଓ ସାମାନ୍ୟ ମୁଠାଏ ଚାଉଳ ବା ନଡ଼ିଆଟାଏ ଦେଉଛି, ସେ ବା ଏମିତି କ'ଣ କ୍ଷତିରେ ପଡ଼ିଲା ଯେ ମୋତେ ଦଣ୍ଡ ପାଇବାକୁ ପଡ଼ିବ? ତେଣୁ ମୋତେ ଯିବାକୁ ଦିଅନ୍ତୁ ।" ନିର୍ମଳାନନ୍ଦ କହିଲା ।

କିନ୍ତୁ ସେତିକିବେଳେ ରାଜଗୁରୁ ନିର୍ମଳାନନ୍ଦ ଆଡ଼େ ଅନାଇ କହିଲେ, "ଶୁଣ ଭଣ୍ଡ ସାଧୁ! ଗୋଟାଏ ପରିବାରରେ ଚାରି ପୁଅ ଥିଲେ । ତିନି ପୁଅ ଭାରି ଚାଲାକ । କିନ୍ତୁ ଗୋଟାଏ ପୁଅ ଭୋଳା ପ୍ରକୃତର ବାଳକ । ତିନି ଭାଇ ତାକୁ ବଡ଼ ହଇରାଣ କରନ୍ତି । ସେ କାନ୍ଦେ । ମା ଯେତେବେଳେ ଅନ୍ୟ ଭାଇମାନଙ୍କୁ ପଚାରନ୍ତି, ସେମାନେ କହନ୍ତି କି ସେ ବୋକା । ତାକୁ ଚିଡ଼ାଇ, ଦଣ୍ଡ ଦେଇ ସେମାନେ ତାକୁ ଚାଲାକ କରିବାର ଚେଷ୍ଟା କରୁଛନ୍ତି । ଏ କୈଫିୟତ ଶୁଣି ମା ସେ ଭୋଳା ପୁଅକୁ ସେ ଭାଇମାନଙ୍କ

ଭଲ ଚଲାକ ହେବାକୁ ଉପଦେଶ ଦିଅନ୍ତି । ସେ ଭାଇମାନଙ୍କ କଥା ଶୁଣିବାକୁ ତାଗିଦା କରି ଦିଅନ୍ତି ।

"କିଛିଦିନ ପରେ ସେ ମଣ୍ଡଳଙ୍କର ମୃତ୍ୟୁ ହେଲା । ଯମପୁରୀରେ ସେ ଦେଖିଲେ, କେବଳ ଗୋଟିଏ ଦୋଷ ଯୋଗୁଁ ତାଙ୍କୁ କିଛି କାଳ ନର୍କ ଭୋଗ କରିବାକୁ ପଡ଼ିବ । ତାହା ହେଲା, ସେ ଭୋଳ ପୁଅକୁ ଯେପରି ସ୍ୱତନ୍ତ୍ର ଦୃଷ୍ଟିରେ ଦେଖିବା କଥା, ସେପରି ଦେଖି ନାହାନ୍ତି । ସମସ୍ତଙ୍କ ପ୍ରତି ସମାନ ସ୍ନେହ ରଖିବା ଗୋଟିଏ କଥା, କିନ୍ତୁ ପ୍ରତ୍ୟେକ ପୁଅର ସ୍ୱଭାବ ଓ ଶକ୍ତି ଅନୁସାରେ ତା'ର ତତ୍ତ୍ୱ ନେବା ଅନ୍ୟ ଏକ କଥା ।"

"ଆପଣ ଏ କାହାଣୀ ଦ୍ୱାରା କ'ଣ ବୁଝାଉଛନ୍ତି?" ନିର୍ମଳାନନ୍ଦ ପଚାରିଲା ।

ରାଜଗୁରୁ ଉତ୍ତର ଦେଲେ, "ରାଜାଙ୍କର ଅଧିକାଂଶ ପ୍ରଜା ନିରୀହ ଓ ସରଳ-ବିଶ୍ୱାସୀ । ତମେ ଧୂର୍ତ୍ତ । ସେ ମଣ୍ଡଳ ଯେପରି ଚଲାକ ପୁଅଙ୍କ କଥା ଶୁଣି ଭୋଳ ପୁଅ ପ୍ରତି ବିଶେଷ ଧ୍ୟାନ ନଦେଇ ନର୍କ ଭୋଗ କଲେ, ରାଜା ତମ ଯୁକ୍ତି ମାନି ତମକୁ ଛାଡ଼ିଦେଲେ ସେହିପରି ନର୍କ ଭୋଗ କରିବେ । ତମେ ଲୋକଙ୍କ ବିଶ୍ୱାସର ସୁଯୋଗ ନେଇଛ; ତମେ ଯେ ଜାଣି ଶୁଣି ଠକିଛ, ଏକଥା ତମେ ସ୍ୱୀକାର କରୁଛ । ତେଣୁ ତମ ଅପରାଧ ଯୋଗୁଁ ତମେ ଦଣ୍ଡ ପାଇବ । ତମ କାର୍ଯ୍ୟ ଦ୍ୱାରା କାହାର କେତେ କ୍ଷତି ହୋଇଛି ନ ହୋଇଛି, ତାହା ଭିନ୍ନ କଥା!"

ରାଜା ସଙ୍ଗେ ସଙ୍ଗେ କହିଲେ, "ଠିକ୍ । ଆଉ କୌଣସି ଯୁକ୍ତି ତର୍କର ଆବଶ୍ୟକତା ନାହିଁ । ପ୍ରଶ୍ନ ହେଲା, କି ପ୍ରକାର ଦଣ୍ଡ ଦିଆଯିବ ।"

ରାଜଗୁରୁ କହିଲେ, "ମହାରାଜ, ଏ ତିନି-ଜଣଯାକ ଭଣ୍ଡ ବେଶ୍ ହୃଷ୍ଟପୁଷ୍ଟ ଦେଖା ଯାଉଛନ୍ତି । ଖାଲି ଅଳସୁଆ ବୋଲି ସହଜ ମାର୍ଗରେ ଉପାର୍ଜନ କରୁଛନ୍ତି । ଏମାନଙ୍କୁ ଆପଣଙ୍କ ଉଦ୍ୟାନରେ ମାଳୀ କାମରେ ଲଗାଇ ଦିଅନ୍ତୁ ।



# ଚମତ୍କାର ହିସାବ!

ଜୟଗଡ଼ ଗାଁର ଲୋକେ ଗୋଟାଏ ମନ୍ଦିର ନିର୍ମାଣ କରିବାକୁ ସ୍ଥିର କଲେ ଓ ମହାଜନ ପାଖକୁ ଯାଇ ସେମାନଙ୍କ ଯୋଜନା କଥା କହିଲେ ଓ କିଛି ଚାନ୍ଦା ମାଗିଲେ ।

"ଶୁଣ । ଗାଁ ସୀମାରେ ଆମ୍ବତୋଟା ପାଖରେ ମୋର ଖଣ୍ଡିଏ ପଡ଼ିଆ ଜମି ପଡ଼ିଛି । ତା'ର ମୂଲ୍ୟ ଏକହଜାର ଟଙ୍କା । ତୁମେ ମୋ ନାମରେ ହଜାରେ ଟଙ୍କା ଚାନ୍ଦା ବସାଇ ଦିଅ ଓ ସେହି ଜମି ଉପରେ ମନ୍ଦିର ନିର୍ମାଣ କର ।" ମହାଜନ କହିଲେ ।

ଲୋକେ ଦେଖିଲେ, ଏ ପ୍ରସ୍ତାବ ମନ୍ଦ ନୁହେଁ । ସେମାନେ ସେହି ଜମି ଉପରେ ମନ୍ଦିର ନିର୍ମାଣ ପାଇଁ ସ୍ଥିର କରି ତା'ପରେ ଚାନ୍ଦା ଆଦାୟରେ ଲାଗି ପଡ଼ିଲେ ।

ସେମାନେ ମନ୍ଦିର ନିର୍ମାଣ ସକାଶେ ଯେତିକି ଖର୍ଚ୍ଚ ହେବ, ସେଥିପାଇଁ ଆଉ ପାଞ୍ଚଶହ ଟଙ୍କା ଅଧିକା ଆବଶ୍ୟକ ହେବ ବୋଲି ହିସାବରେ ଦେଖିଲେ । କିନ୍ତୁ ଗ୍ରାମବାସୀମାନେ ଯିଏ ଯାହାର ସାଧ୍ୟ ମତେ ଚାନ୍ଦା ଦେଇ ସାରିଥିଲେ । ମହାଜନହିଁ ଅଧିକା ଦେଇ ପାରିବେ ।

ସେମାନେ ମହାଜନ ପାଖକୁ ଯାଇ ଆଉ ପାଞ୍ଚଶହ ଦରକାର ବୋଲି କହିବା ମାତ୍ରେ ମହାଜନ କହିଲେ, "ବେଶ୍, ବେଶ୍, ମୁଁ ପନ୍ଦର ଶହ ଚାନ୍ଦା ଦେଲି ବୋଲି ଲେଖ ।"

ଗ୍ରାମବାସୀମାନେ ଆନନ୍ଦରେ ଖାତାରେ ତାହାହିଁ ଲେଖିଲେ ଓ କହିଲେ, "ତେବେ ପାଞ୍ଚଶହ ଟଙ୍କା ଏବେ ଦେବେ ?"

"ଆରେ, ଦେବା ଦରକାର କ'ଣ ? ସେ ଜମିଖଣ୍ଡିକର ଦାମ କ'ଣ ଆଉ ହଜାରେ ଅଛି ? ତା'ର ଦାମ ମୁଁ ପନ୍ଦର ଶହକୁ ବଢ଼ାଇ ଦେଲିଣି । ଯାଅ ।" ମହାଜନ କହିଲେ ।





# ନର୍ତ୍ତକ ଛାଗଲ

ସେ ଅନେକ ଦିନ ତଳର କଥା । ଗୋହିତପୁର ସହର ନହେଲେ ବି ସହର-ପ୍ରାୟ ଜନପଦ । ସେଠି ଥିଲା ଦେବ ମନ୍ଦିର, ବିଦ୍ୟାଳୟ ଏବଂ ବଡ଼ ହାଟ ।

ସର୍ବୋପରି ଗୋହିତପୁରରେ ରହୁଥିଲେ ମହାଜନ ମାକୁନ୍ଦ ମୃଦୁଲ । ରହୁଥିଲେ ବୋଲି କହିଲି କି ? ହଁ; କାରଣ ଏ କଥା ଲେଖିବା ବେଳକୁ ସେ ଆଉ ସେଠି ନଥିଲେ । ସେ ସହରକୁ ଉଠି ଯାଇଥିଲେ ।

ଉଠି ଯିବାର କାରଣ ଗୋହିତପୁରରୁ ତାଙ୍କର ଆଉ ବିଶେଷ ଲାଭ ଉଠାଇବାର ଆଶା ନଥିଲା । ମାମଲାମକଦ୍ଦମାରେ ପକାଇ ସେ ସେଠାକାର ସବୁ ଲୋକଙ୍କୁ ପ୍ରାୟ ସର୍ବସ୍ୱାନ୍ତ କରି ସାରିଥିଲେ । ଯେଉଁ ବିପୁଳ ଧନ ସେ ଠୁଳ କରିଥିଲେ, ସହରରେ ଗୋଟାଏ ବିରାଟ ବେପାର ଆରମ୍ଭ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ ।

ସେ ଗୋହିତପୁର ଛାଡ଼ି ଚାଲିଗଲେ ବୋଲି ଯେଉଁଦିନ ଜଣା ପଡ଼ିଗଲା, ସେଦିନ ଗ୍ରାମର ସବୁଠାରୁ ନିର୍ଦ୍ଧନ ବ୍ୟକ୍ତି ମଧ୍ୟ ଘରେ ଖିରି ଚକୁଳି ତିଆରି ହେଉ ବୋଲି ବରାଦ କରିଥିଲା । ଜ୍ୟୋତିଷାଗ୍ରଣୀ ପଣ୍ଡିତ ଲମ୍ବୋଦର ମିଶ୍ର ଗବେଷଣା କରି କହୁଥିଲେ କି ତ୍ରେତା ଯୁଗରେ ଶ୍ରୀରାମଙ୍କ ବାନର ବାହିନୀ ଗୋହିତପୁର ଭିତର ଦେଇ ଗଲାବେଳେ ସେମାନଙ୍କ ଭିତରୁ କାହା କାହାକୁ ଶୋଷ ଲାଗିଥିଲା ଏବଂ ଗୋହିତପୁରର ତତ୍କାଳୀନ ବାସିନ୍ଦାମାନେ ସେମାନଙ୍କୁ ପାଣି ଯୋଗାଇବାରେ ତ୍ରୁଟି କରିଥିଲେ । ସେହି ଅତୃପ୍ତ ବାନରମାନଙ୍କ ଅସନ୍ତୋଷ କଳିଯୁଗରେ ମାକୁନ୍ଦ ମୃଦୁଲ ରୂପରେ ସମ୍ଭବ ହୋଇ ସେ ଦିନର ସେ ଅବିବେକୀ ଗ୍ରାମବାସୀମାନଙ୍କ ବଂଶଧରମାନଙ୍କୁ ଆକଣ୍ଠ ଶୋଷଣ କରୁଥିଲା ।

ମନୋଜଦାସ



ତେବେ ଗୋବିନ୍ଦପୁରରୁ ତାଙ୍କର ବହୁତ ପ୍ରାପ୍ୟ ରହିଥିଲା । ଗୁଡ଼ିଏ ଖାତକଙ୍କର ଘର ଦ୍ୱାର ନିଲାମ ହେବା କଥା ଓ ସେଥିରୁ ତାଙ୍କୁ ଅନେକ ଟଙ୍କା ମିଳିବା କଥା । ନିଲାମ ପାଇଁ ଯେଉଁ ଦିନଟି ଧାର୍ଯ୍ୟ ହେଲା, ସେଦିନ ଅନେକ କାରଣରୁ ମାଳୁଢ଼ ମୁଦୁଲି ଗୋବିନ୍ଦପୁର ଯାଇ ପାରିଲେ ନାହିଁ । ଅତଏବ ପୁଅ ବୀରେନ୍ଦ୍ରକୁ ଯିବାକୁ କହିଲେ ।

ବୀରେନ୍ଦ୍ର ପୃଥିବୀର ସବୁଠାରୁ ବିଚକ୍ଷଣ ବୁଦ୍ଧିମାନ ବ୍ୟକ୍ତିମାନଙ୍କ ଭିତରେ ନିଜକୁ ଗଣ୍ୟ କରୁଥାଏ । "ମୋ ଭଳି ପୁଅ ପାଇ ଯେ କୌଣସି ବାପା ଗର୍ବରେ ଫାଟି ପଡ଼ିବା ଉଚିତ !" ସେ ବୋଉ ଓ ଜେଜେମା'ଙ୍କ ଆଗରେ ବାରମ୍ବାର ଏକଥା କହୁଥାଏ । କିନ୍ତୁ ସେମାନେ ଏକଥା କହୁ ନଥାନ୍ତି କି ମହାଜନ ମାଳୁଢ଼ ମୁଦୁଲି ଫାଟିବାର କୌଣସି ଲକ୍ଷଣ ଦେଖାଯାଉ ନଥାଏ । ବୀରେନ୍ଦ୍ର ସେଥିରେ ବଡ଼ ବିସ୍ମୟ ଅନୁଭବ କରୁଥାଏ ।

ଟଙ୍କା ଅସୁଲ କରିବା ସକାଶେ ଗୋବିନ୍ଦପୁର ଆସିଲା ବୀରେନ୍ଦ୍ର । ଯଥା ସମୟରେ କର୍ତ୍ତୃପକ୍ଷ ନିଲାମ ଡାକିଲେ ଏବଂ ଅସହାୟ ଖାତକ-ମାନଙ୍କଠାରୁ ଆଦାୟ ହେବା ଅର୍ଥରୁ ମାଳୁଢ଼ ମୁଦୁଲିଙ୍କ ପ୍ରାପ୍ୟ ଦଶହଜାର ତିନିଶହ ପଚିଶ ଟଙ୍କା ବୀରେନ୍ଦ୍ରକୁ ଦେଇଦେଲେ ।

ବୀରେନ୍ଦ୍ର ଏଗାର ଥର ସେ ଟଙ୍କା ଗଣି ତାର ବାକସରେ ରଖିଲେ । ଯେଉଁ ସମୟର କଥା କୁହାଯାଉଛି, ସେତେବେଳେ ପ୍ରଚୁର ଟଙ୍କାକଉଡ଼ି ଧରି ମଧ୍ୟ ଲୋକେ ନିର୍ଭୟରେ ବାଟଘାଟରେ ଯିବାଆସିବା କରୁଥିଲେ ।

ବୀରେନ୍ଦ୍ର ସହରକୁ ଫେରିବ, ଏତେବେଳେ ସହରରୁ ସଦ୍ୟ ଆସିଥିବା ଗୋବିନ୍ଦପୁରର ଜଣେ ବାସିନ୍ଦାଠାରୁ ସେ ଖଣ୍ଡିଏ ଚିଠି ପାଇଲା । ଲେଖିଥିଲେ ମାଳୁଢ଼ ମୁଦୁଲି । ଗୋବିନ୍ଦପୁର ଅଞ୍ଚଳରେ ଭଲ ଛେଳି ଶସ୍ତାରେ ମିଳେ । ପୁଅ ଯେମିତି ସବୁଠାରୁ ଉତ୍କୃଷ୍ଟ ଛେଳି କିଣି ନେଇ ଆସିବ—ଦାମ୍ ବଢ଼ା ହେଲେ ବି ଯାଏ ଆସେ ନାହିଁ—ଏଇଆ ଥିଲା ଚିଠିରେ ନିର୍ଦ୍ଦେଶ ।

ବୀରେନ୍ଦ୍ର ହାଟକୁ ଗଲା । ସବୁଠୁଁ ବଡ଼ ଛେଳି ବେପାରୀ ପାଖରେ ତା'ର ସମ୍ପ୍ରଦାୟ

ଛେଳି ଦେଖିଲା । କିନ୍ତୁ ଯେହେତୁ ସେ ବୁଦ୍ଧିମାନ୍, ତେଣୁ ନାପସନ୍ଦ ଭାବ ଦେଖାଇ କହିଲା, "ଉଃ, ଏଗୁଡ଼ା ଛେଳି ନା··· ପାଣିକଖାରୁ ମ!"

"ଆଜ୍ଞା, କ'ଣ କହିଲେ ? ଛେଳି ନା କ'ଣ ?" ପ୍ରଥମେ ନିଜ କାନକୁ ବିଶ୍ୱାସ କରୁ ନଥିବା ବେପାରୀ ପଚାରିଲା ।

"କହିଲି କି ଏଗୁଡ଼ା ଛେଳି ନା ପାଣିକଖାରୁ !" ବାଦେଇ ଏଥର କଣ୍ଠସ୍ୱର ବଳିଷ୍ଠ କରି କହିଲା ।

ଏ ଅପୂର୍ବ ତୁଳନାରେ ଚମତ୍କୃତ ହୋଇ ବେପାରୀ କହିଲା, "ବାବୁ, ତମେ ତେବେ ସେ ଭାଲ୍ ଯାଦୁକର ପାଖକୁ ଯାଅ । ଆମ ଛେଳିଗୁଡ଼ା ଏମିତ ପାଣିକଖାରୁ ।"

ଭାଲ୍ ଯାଦୁକର ପ୍ରସଙ୍ଗରେ କୌତୂହଳୀ ହୋଇ ବାଦେଇ ପଚାରି ବୁଝିଲା କି ସେ ଲୋକ ବୁଇଦାନ ହେଲା ସବେଦାର କୂଳରେ ତମ୍ବୁ ପକାଇ ରହିଛି ଓ କେତୋଟି ଅଦ୍ଭୁତ ଛେଳି ସାହାଯ୍ୟରେ ନାନା ଜବୁ ବାଜୀ ଦେଖାଉଛି !

ବାଦେଇ ଯାଇ ଯାଦୁକରକୁ ପଚାରିଲା, "ତମଠି କୁଆଡ଼େ ଅଦ୍ଭୁତ ଛେଳି ଅଛନ୍ତି!"

"ଅଛନ୍ତି । କସରତ ଦେଖାଇବ । ଦେଖିବାକୁ ହେଲେ ପଚିଶ ଟଙ୍କା ଦେବାକୁ ହେବ ।" ଯାଦୁକର କହିଲା ।

ବାଦେଇର କୌତୂହଳ ବଢ଼ିଗଲା । ସେ ପଚିଶ ଟଙ୍କା ଦେବାକୁ ରାଜି ହେଲା । ଭାଲ୍ ବାପୁଡ଼ା ତମ୍ବୁ ଭିତରୁ ଗୋଟାଏ ଛେଳି ବାହାର





କରି ଆଣି ଯେମିତି ତାଳି ବଜାଉଛୁ, ସେମିତି ଛେଳିଟି ଦୁଇ ଗଛ ଭିତରେ ବନ୍ଧା ହୋଇଥିବା ଖଣ୍ଡିଏ ଦଉଡ଼ି ଉପରକୁ ଡେଇଁପଡ଼ି ତା' ଉପରେ ଚାଲିଲା। ପୁଣି ଗୋଡ଼ ଛନ୍ଦି ତଳକୁ ଓହ୍ଲାଇ ପଡ଼ି ଏପଟରୁ ସେପଟକୁ ଚାଲିଗଲା। ତା'ପରେ ଦଉଡ଼ି ଉପରେ ମୁଣ୍ଡ ତଳକୁ କରି ଗୋଡ଼ ଉପରକୁ କରି ଠିଆହେଲା ମଧ୍ୟ!

ବୀରେନ୍ଦ୍ର ବିସ୍ମୟ-ବିମୂଢ଼ ଭାବରେ ସେ ଦୃଶ୍ୟ ଦେଖୁଥାଏ। ବାପା ଉତ୍କୃଷ୍ଟ ଛେଳି ନେଇଯିବାକୁ ନିର୍ଦ୍ଦେଶ ଦେଇଥିଲେ ଦୁନିଆରେ ଏଭଳି ଛେଳି ସମ୍ଭବ ବୋଲି କଦାପି କଳ୍ପନା କରି ନଥିବେ। ସେ ଯଦି ଏହାକୁ ନେଇଯାଇ ବାପା ତଥା ସହରରେ ସଦ୍ୟ-ପରିଚିତ ବ୍ୟକ୍ତିମାନଙ୍କ ଆଗରେ ଏହାର କସରତ ଦେଖାଇପାରେ, ତେବେ ସେ ରାଜନଅରକୁ ନିମନ୍ତ୍ରିତ ହେବା ଅସମ୍ଭବ ନୁହେଁ। ଆଉ, ସେ ଶୁଣିଥିଲା, ରାଜକୁମାରୀ ହବୁ ବିଦ୍ୟା ଦେଖିବାକୁ ବଡ଼ ଭଲ ପାଆନ୍ତି। ବୀରେନ୍ଦ୍ର ପାନିଆ ବାହାର କରି ମୁଣ୍ଡ କୁଣ୍ଡାଇ ପକାଇଲା ଓ ମୁହଁ ପୋଛି ପକାଇଲା।

ତେଣେ ଯାଦୁକରର ହୁକୁମ ମାନି ଛେଳି ଦଉଡ଼ି ଉପରେ ଡେଇଁଲା ମଧ୍ୟ।

"ଆଶ୍ଚର୍ଯ୍ୟ କଥା।" ବୀରେନ୍ଦ୍ର କହିଲା।

"ଜରୁର୍! ତେବେ ତମେ ଯଦି ମୋର ଗାୟକ ଛାଗଳକୁ ଦେଖିବ, ତେବେ କେତେ ଆଶ୍ଚର୍ଯ୍ୟ ନ ହେବ! ଶହେ ଟଙ୍କା ଦର୍ଶନୀ।"

"ଗାୟକ ଛାଗଳ!"

ଭିଲ୍ ବାପୁଡ଼ା ଆଉ କିଛି ନକହି ତମ୍ବୁ ଭିତରୁ ଅନ୍ୟ ଏକ ଛେଳି ବାହାର କରି ଆଣିଲା। "ଗା'ରେ ପିଲା, ଗା'। ଗୋଟାଏ ଭଲ ରାଗ ଗାଇ ପକା।" ସେ କହିଲା।

ସଙ୍ଗେ ସଙ୍ଗେ ଛେଳିଟି ବସିପଡ଼ି ଆଗ ଗୋଡ଼ ଦୁଇଟାରୁ ଗୋଟାଏ କାନ ପାଖକୁ ନେଇ ଅନ୍ୟଟି ବିସ୍ତାର କରି ଗୀତ ବୋଲିଲା!

ବୀରେନ୍ଦ୍ର କିଛି ସମୟ ଯାଏ କଥା କହି-ପାରିଲା ନାହିଁ। "କ'ଣ ବାବୁ! ଏତିକରେ ହତବମ୍ବ? ଯଦି ମୋର ନର୍ତ୍ତକ ଛାଗଳକୁ ଦେଖିବ, ତେବେ? ଆଉ ଦୁଇଶହ ଟଙ୍କା ଦର୍ଶନୀ।"



"ନର୍ତ୍ତକ ଛାଗଳ !!"

"ଆଉ କ'ଣ !" ଭୀଲ୍ ଯାଦୁକର ତୃତୀୟ ଥର ପାଇଁ ଛେଳଟିଏ ବାହାର କରି ଆଣିଲା । "ଦେଖା ବାବୁଙ୍କୁ ଗୋଟାଏ ନାଚ !"

ଛେଳ ଯେ ଖାଲି ନାଚିଲା, ସେତିକି ନୁହେଁ, ମଧୁର କଣ୍ଠରେ ଗାଇଲା ମଧ୍ୟ । ଅଧଘଣ୍ଟାଏ ପର୍ଯ୍ୟନ୍ତ ।

ସେ ଅଧଘଣ୍ଟାକ କାଳ ବୀରେନ୍ଦ୍ର ମୁହଁରେ କଥା ଫୁଟିଲା ନାହିଁ । ତା'ପରେ ସେ ପଚାରିଲା, "ଭୀଲ୍ ସର୍ଦ୍ଦାର ! ଏହାର ମୂଲ୍ୟ କେତେ ?"

"ଦଶ ହଜାର ଟଙ୍କା । ଗୋଟାଏ ପଇସା କମ୍ ନୁହେଁ ।"

"ମୋ ପାଖରେ ଦର୍ଶନୀ ଟଙ୍କା ପରେ ଜମାରୁ ସେତିକି ଅଛି ।"

"ଦେଇଦିଅ । ତମେ ଯଦି ବୁଦ୍ଧିମାନ ହୋଇଥିବ, ବର୍ଷକ ଭିତରେ ଏ ଛେଳର କଳା କସ୍ରତ୍ ଦେଖାଇ ଲକ୍ଷେ ଟଙ୍କା ଉପାର୍ଜ୍ଜନ କରିବ । ରାଜା ଯଦି ଏହାର ଗୁଣ ଜାଣିବେ, ତେବେ ଦଶଲକ୍ଷ ଦେଇ କିଣି ନେବେ ।" ଭୀଲ୍ କହିଲା ।

ବୀରେନ୍ଦ୍ର ଯେ ବୁଦ୍ଧିମାନ ଏଥିରେ ତା'ର ନିଜର ତ ସନ୍ଦେହ ନ ଥିଲା ! ସେ ଆଉ ବିଳମ୍ବ ନ କରି ପକେଟ ଝାଡ଼ି ଦଶହଜାର ତିନିଶହ ପଚିଶ ଟଙ୍କା ଗଣିଦେଲା ।

ରୋହିତପୁରରେ ବିନା ପଇସାରେ ତାକୁ କେହି ଖାଇବାକୁ ଦେବେ, ସେ ସମ୍ଭାବନା ନଥିଲା । ଘୋଡ଼ାଗାଡ଼ିଟିଏ ଭଡ଼ା କରି ସେ ସହରକୁ ଫେରିବ ବୋଲି ସ୍ଥିର କଲା । କିନ୍ତୁ ଗାଡ଼ିବାଲା କହିଲା, "ବାବୁ, ମୋ ଗାଡ଼ିରେ ଛେଳି କେବେ ସବାର ହୋଇ ନାହାନ୍ତି । ତିନିଗୁଣ ଭଡ଼ା ଦେବାକୁ ହେବ—ଅଧା ଆଗତୁରା ।"

ଆଗତୁରା ଦେଲା ଭଳି ପଇସା ତା'ଠିଁ ନଥିଲା । ଛେଳିକୁ ଟାଣି ଟାଣି ସେ ଯାଇ ସହରରେ ପହଞ୍ଚିଲା । ସେତେବେଳକୁ ସନ୍ଧ୍ୟା । ଘରେ ରାଜାଙ୍କ ଦେୱାନ୍ ଓ ସହରର ମୁଖ୍ୟ ଶାସକ ଅତିଥି ହୋଇଥିବାର ସେ ଦେଖିଲା ।

ନର୍ତ୍ତକ ଗ୍ରାମବାଳର ବେଶଭୂଷା ଦେଖି ସେମାନେ ହସିଲେ । ବାରେନ୍ଦ୍ ମନେ ମନେ କହିଲା, “ହସୁଛ ପରା! ଥରେ ଯାଦ ଏହାର ଗୁଣ ଜାଣିବ, ତେବେ ବୁଝିବ ।”

ବାପାଙ୍କୁ କହିଲା, “ଏ ଛେଳି ଭଲ ଛେଳି ପୃଥିବୀରେ ନଥିଲେ, ନାହାନ୍ତି କି ହେବେ ନାହିଁ !”

“ହଉ, ସେକଥା ବୁଝା ପଡ଼ିବ ।” ମାକୁନ୍ଦ ମୃଦୁଲ ଗମ୍ଭୀର ହୋଇ କହିଲେ ।

କ୍ଲାନ୍ତ ବାରେନ୍ଦ୍ ଗାଧୁଆ ପାଧୁଆ କରି ଖାଇ ପକାଇ ଟିକିଏ ବିଶ୍ରାମ ପାଇଁ ନିଜ କୋଠରୀ ଭିତରେ ଶୋଇ ପଡ଼ିଲା । ଜାଗା ହୋଇ ତା'ପରେ ଛେଳିର ଗୁଣ ଦେଖାଇବ ବୋଲି ସ୍ଥିର କଲା ।

ତାକୁ ଯେତେବେଳେ ତା' ବୋଉ ନିଦରୁ ଉଠାଇଲେ, ସେତେବେଳକୁ ଅଧ ରାତି । “ଆ, ଖାଇବୁ ଆ । ଅତିଥିମାନେ ଗଲେଣି ।” ବୋଉ କହିଲେ ।

ବାରେନ୍ଦ୍ ଖାଇବାକୁ ବସିଲା । ମାଂସ ତରକାରୀ ଖାଇଲା ବେଳେ ବାପା କହିଲେ, “ତୁ ଯେତେ ଭଲ ହୋଇଥିବ ବୋଲି ଧାରଣା ଦେଇଥିଲୁ, ଏ ମାଂସ ସେତେ ଭଲ ପଡ଼ିଲା ନାହିଁ । ଅତିଥିମାନେ ସେମିତି ବିଶେଷ ପ୍ରଶଂସା କଲେ ନାହିଁ ତ !”

ଆଖି ବଡ଼ ବଡ଼ କରି ବାରେନ୍ଦ୍ ପଚାରିଲା, “ମାନେ ? ତମେ ମୋ ଛେଳିକୁ ମାରି ପକାଇ ରାନ୍ଧି ସାରିଲଣି ?”

“ଆଉ ତେବେ କ'ଣ ପାଇଁ ଏତେ ଜରୁରୀ ଖବର ପଠାଇଥିଲୁ? ଏ ଦୁଇ ବିଶିଷ୍ଟ ଅତିଥି ଖାଇବେ ବୋଲି ତ!” ମାକୁନ୍ଦ ମୃଦୁଲ କହିଲେ ।

ବାରେନ୍ଦ୍ ରଡ଼ି ଛାଡ଼ି କାନ୍ଦି ଉଠିଲା । ସେତେବେଳେ ମାକୁନ୍ଦ ମୃଦୁଲ ବୁଝିଲେ ଯେ ଟୋକା ଦଶହଜାର ଟଙ୍କା ବ୍ୟୟ କରି ଗୋଟିଏ ଛେଳି କିଣିଛି, ସେତେବେଳେ ସେ ପାଗଳ ହୋଇଗଲେ ।






# ବିପରୀତ ଫଳ

ବହୁତ ଦିନ ପୂର୍ବେ ମିଥିଳା ଦେଶରେ ମନ୍ଦଭାଗ୍ୟ ନାମକ ଜଣେ ରାଜା ଶାସନ କରୁଥା'ନ୍ତି । ସେ ଥିଲେ ମୂର୍ଖ, କ୍ରୋଧୀ ଓ ଅହଂକାରୀ । ମନକୁ ଯାହା ଆସିବ ତତ୍‌କ୍ଷଣାତ୍ ତା'ର ପରିଣାମ ଚିନ୍ତା ନକରି କାର୍ଯ୍ୟରେ ପରିଣତ କରିବେ ।

ଦିନେ ପ୍ରାସାଦର ଛାତ ଉପରେ ବୁଲୁଥା'ନ୍ତି, ଦେଖିଲେ ରାସ୍ତାଘାଟ ବଜାର ଚାରିଆଡ଼େ ବହୁତ ଲୋକ ନାନା ରଙ୍ଗର ପୋଷାକ ପିନ୍ଧି ଯିବା ଆସିବା କରୁଛନ୍ତି । ସେ ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କୁ ଡାକି ପଚାରିଲେ, "ମନ୍ତ୍ରୀବର, ଦେଖ ରାଜପଥ ଉପରେ କେତେ ପ୍ରକାରର ଲୋକ କେତେ ପ୍ରକାରର ପୋଷାକ ପିନ୍ଧି ଯାଉଛନ୍ତି । ଏସବୁ ମୋର ଅସହ୍ୟ । ତମେ ଯାଇ ରାଜ୍ୟରେ ଢେଙ୍ଗୁରା ଦେଇ ପ୍ରଚାର କରିଦିଅ କି କାଲିଠାରୁ ସମସ୍ତେ ଏକପ୍ରକାର ପୋଷାକ ପିନ୍ଧିବେ, ସମସ୍ତେ ଏକ ଭାଷା କହିବେ, ଏକ ପ୍ରକାର ଖାଦ୍ୟ ଖାଇବେ । ଆଉ ସବୁ କିଛି ଏକ ପ୍ରକାର ହେବା ମୁଁ ଚାହେଁ । ଏହା ମୋର ଆଦେଶ । ଆଦେଶ ଅମାନ୍ୟ କଲେ ଦଣ୍ଡିତ ହେବେ ।"

ମନ୍ତ୍ରୀ ବହୁତ କରି ରାଜାଙ୍କୁ ବୁଝାଇଲେ ଯେ ଏପରି କରିବା ସମ୍ଭବ ନୁହେଁ । କିନ୍ତୁ ରାଜାଙ୍କର କୌଣସି ପ୍ରକାରରେ ମତ ପରିବର୍ତ୍ତନ ହେଲା ନାହିଁ । ବରଂ ରାଜା କହିଲେ ଯେ ତାଙ୍କର ଆଦେଶ ଯେପରି ହେଉ କାର୍ଯ୍ୟକାରୀ ହେବ ।

ପରଦିନ ରାଜା ମନେ ମନେ ଭାବିଲେ ମନ୍ତ୍ରୀ ଢେଙ୍ଗୁରା ପିଟି ରାଜ୍ୟରେ ରାଜାଙ୍କ ଇଚ୍ଛା କଥା ପ୍ରଚାର କରିଛି ନା ନାହିଁ ଦେଖିବାକୁ ହେବ । ମନେ ମନେ ରାଜା ଭାବିଲେ, "ମୋ ଶାସନରେ ଏପରି ଏକ ନୂଆ ରୀତି ପ୍ରଚଳନ

ପଚଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

କରିବା ଦ୍ୱାରା ଇତିହାସରେ ମୋ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ରାଜ୍ୟ ଶାସନର ଇତିହାସରେ ମୋ ଶାସନ ପଦ୍ଧତି ମଧ୍ୟ ଏକ ବିଶିଷ୍ଟ ସ୍ଥାନ ପାଇବ ।”

ତା’ପରେ ରାଜା ଉଦ୍ୟାନ ପଟକୁ ଯାଇ ଦେଖିଲେ ସବୁ ଦାସଦାସୀ ଏକ ପ୍ରକାର ପୋଷାକ ପିନ୍ଧିଛନ୍ତି । ସେ ବୁଝିପାରିଲେ ନାହିଁ କିଏ ପୁରୁଷ କିଏ ନାରୀ । ତା’ପରେ ରାଜା ରାଣୀଙ୍କ ନବରକୁ ଯାଇ ଦେଖିଲେ ରାଣୀ କିଏ ଓ ଦାସୀ କିଏ ଚିହ୍ନିବା କଠିନ । ରାଜାଙ୍କ ମନଟା ବିକଳ ହୋଇଗଲା । ଯେତେ ଯେତେ ଅଧିକ ସଂଖ୍ୟକ ଲୋକ ସେ ଦେଖୁଥା’ନ୍ତି ତାଙ୍କ ମନ ସେତେ ବିକଳ ହୋଇ ଉଠୁଥାଏ । ତାଙ୍କର ମନ ଭ୍ରମ ଓ ପ୍ରମାଦରେ ପୂର୍ଣ୍ଣ ହେଲାପରି ସେ ଅନୁଭବ କଲେ ।

ତା’ପରେ ସେ ଦରବାରକୁ ଯାଇ ଦେଖିଲେ ଅବସ୍ଥା ଆହୁରି ଖରାପ । କିଏ ମନ୍ତ୍ରୀ କିଏ ସୈନ୍ୟ କିଏ କଟୁଆଳ କିଛି ବାରି ହେଉନାହିଁ । ବହୁ କଷ୍ଟରେ ଖୋଜି ଖୋଜି ମନ୍ତ୍ରୀଙ୍କୁ ପାଇ ରାଗରେ ଗର୍ଜି ଉଠି କହିଲେ “ମନ୍ତ୍ରୀ” ।

ଉତ୍ତରରେ ମନ୍ତ୍ରୀ ମଧ୍ୟ ଗର୍ଜି ଉଠି କହିଲେ, “ମନ୍ତ୍ରୀ” ।

“ଆରେ ମୂର୍ଖ ମୁଁ କ’ଣ ମନ୍ତ୍ରୀ ?” ରାଜା ଗର୍ଜି ଉଠିଲେ ।

“ଆରେ ମୂର୍ଖ ମୁଁ କ’ଣ ମନ୍ତ୍ରୀ?” ମନ୍ତ୍ରୀ ମଧ୍ୟ ଗର୍ଜି ଉଠିଲେ ।

କ୍ରମେ ରାଜା ଉପଲବ୍‌ଧି କଲେ କି ନିଜର ମୂର୍ଖତା ଯୋଗୁ ଏଇ ପରିଣାମ ହୋଇଛି । ତେଣୁ ସେ ଲଜ୍ଜିତ ହୋଇ ନିଜ ମହଲକୁ ଚୁପ୍‌ଚାପ୍ ଲେଉଟି ଗଲେ ।

ପରଦିନ ଢେଙ୍ଗୁରା ଦିଆ ହୋଇ ପ୍ରଚାର କରାଗଲା ଯେ ସମସ୍ତେ ନିଜ ଇଚ୍ଛା ଅନୁସାରେ ଓ ପ୍ରଥା ଅନୁସାରେ ପୋଷାକ ପରିଚ୍ଛଦ ବ୍ୟବହାର କରିବେ । ସମସ୍ତେ ଶାନ୍ତ ହେଲେ । ରାଜା ଏଣିକି କୌଣସି କଥାରେ ଆଉ ବଦ୍‌ମିଜାଜ୍ ଓ ଜିଦ୍ ଦେଖାନ୍ତି ନାହିଁ ।





# ଶିବ ପୁରାଣ

ମେନକା ଓ ହିମବାନ ତା'ପରେ ନିଜ ପ୍ରାସାଦକୁ ଲେଉଟି ଆସିଲେ । କାଳକ୍ରମେ ମେନକାଙ୍କର ଶହେଟି ପୁତ୍ରସନ୍ତାନ ଜନ୍ମ ହେଲେ । ଜ୍ୟେଷ୍ଠ ପୁତ୍ର ହେଲେ ମୈନାକ । କିଛି କାଳ ପରେ ଚୈତ୍ର ଶୁକ୍ଳ ନବମୀ ଦିନ ଆଦ୍ରା ନକ୍ଷତ୍ରର ଶୁଭ ସମୟରେ ଏକ କନ୍ୟା ଭୂମିଷ୍ଠ ହେଲେ । ପର୍ବତଙ୍କ କନ୍ୟା ଯୋଗୁ ତାଙ୍କ ନାମ ରଖାଗଲା ପାର୍ବତୀ । କନ୍ୟା ଜନ୍ମ ହେବା ମାତ୍ରେ ଦଶଦିଗ ଆଲୋକିତ ହୋଇ ଉଠିଲା ଦେବତାମାନେ ଆନନ୍ଦରେ ପୁଷ୍ପବୃଷ୍ଟି କଲେ ଓ ମହାଶକ୍ତିଙ୍କର ସ୍ତୋତ୍ର ସବୁ ଗାନ କଲେ ।

କନ୍ୟାଟିର ରୂପ ଥିଲା ଅଦ୍ଭୁତ । ତା' ଦେହରୁ ନୀଳବର୍ଣ୍ଣର ଆଲୋକ ନିଃସାରିତ ହେଉଥାଏ । ଲଲାଟରେ ଥିଲା ତୃତୀୟ ନୟନ । ଏସବୁ ଦେଖି ମାତା ମେନକା ପ୍ରାର୍ଥନା କଲେ କି ସେ ଯେପରି ସାଧାରଣ ରୂପ ଧାରଣ କରନ୍ତୁ । ତତ୍‌କ୍ଷଣାତ୍ ସେ ଏକ ସୁନ୍ଦର କୋମଳ ଶିଶୁରେ ପରିଣତ ହୋଇଗଲେ ।

ଝିଅର ଜନ୍ମବୃତ୍ତାନ୍ତ ଶୁଣି ହିମବାନ୍‌ଙ୍କ ମନ ଆନନ୍ଦରେ ଭରି ଉଠିଲା । ସେ ବ୍ରାହ୍ମଣ ଓ ପୁରୋହିତ ନେଇ ପ୍ରସୂତିଗୃହ ନିକଟକୁ ଗଲେ । କସ୍ତୁରୀ ଗୁଣ୍ଡ ଓ ଚନ୍ଦନ ଜଳ ସବୁ ସିଞ୍ଚା ହେଲା । ବ୍ରାହ୍ମଣମାନଙ୍କୁ ଧନରତ୍ନ ଅନେକ ଦାନ ଦିଆଗଲା । ଅନ୍ତଃପୁରର ସ୍ତ୍ରୀମାନେ ନୃତ୍ୟ ଓ ଗାନ କରିବାକୁ ଲାଗିଲେ ଓ ଅନେକ ଉତ୍ସବ କରାଗଲା ।

୩. ପାର୍ବତୀ ଜନ୍ମ




ପାର୍ବତୀ ଧୀରେ ଧୀରେ ବଢ଼ିବାକୁ ଲାଗିଲେ । ବାଳିକା ଅବସ୍ଥାରେ ସେ ନିଜ ସଖୀମାନଙ୍କ ସହିତ ପାହାଡ଼ ଉପରେ ବୁଲୁଥା'ନ୍ତି । ପଶୁପକ୍ଷୀ, ଗଛଲତା ସବୁ ଯେପରି ତାଙ୍କର ସ୍ପର୍ଶରେ ମନ୍ତ୍ରମୁଗ୍ଧ । ସିଂହମାନଙ୍କୁ ବଶୀଭୂତ କରି ତାଙ୍କ ଉପରେ ସବାର ହୋଇ ବଣରେ ବୁଲୁଥା'ନ୍ତି । ସେ ଥିଲେ ଅତ୍ୟନ୍ତ ଦୟାବତୀ । ହାତରେ ଯାହା ପାଆନ୍ତି ସର୍ବଦା ସମସ୍ତଙ୍କୁ ବାଣ୍ଟି ଦିଅନ୍ତି ।

ବହୁତ ସମୟରେ ସେ ରୁହନ୍ତି ଅନ୍ୟମନସ୍କ । ଯଦି କିଛି ନେଇ ଖେଳୁଥା'ନ୍ତି ସଖୀମାନେ ପ୍ରଶ୍ନ କଲେ ସେ ଯେଉଁ ସବୁ ଉତ୍ତର ଦିଅନ୍ତି ସେସବୁ ସେମାନେ ବୁଝିପାରନ୍ତି ନାହିଁ । ସେ ଉତ୍ତରରେ ଥାଏ ସୃଷ୍ଟିର ଗୂଢ଼ ରହସ୍ୟ, ଦିବ୍ୟ ଭାବର ସ୍ଫୁରଣ । ସଖୀମାନେ ସେସବୁ ତାଙ୍କର ବାଳିକାସୁଲଭ ଖେଳ ବୋଲି ଭାବନ୍ତି ।

ବାଳିକା ବୟସରେ ପିତାମାତା ବିଦ୍ୟାରମ୍ଭ କରାଇଲେ ତାଙ୍କୁ କିଛି ଶିଖିବାକୁ ପଡ଼ିଲା ନାହିଁ । ସ୍ମରଣ ମାତ୍ରେ ବିଦ୍ୟାମାନେହିଁ ତାଙ୍କ ସମ୍ମୁଖରେ ଆବିର୍ଭୂତ ହୁଅନ୍ତି । ଅନାୟାସରେ ସେ ସବୁ ବିଦ୍ୟାରେ ପାରଦର୍ଶୀ ହୋଇ ଉଠିଲେ । କାରଣ ସେ ଥିଲେ ଜନ୍ମସିଦ୍ଧ । କେବେ କେବେ ସେ ବୀଣାବାଦନରେ ତତ୍ପର ହୋଇ ଉଠୁଥିଲେ ତ କେବେ କେବେ ସାମବେଦ ଗାନ କରି ସଂସାର ଭୁଲି ଯାଉଥିଲେ । ବାଳିକା ଅବସ୍ଥାରୁହିଁ ସେ ଗଭୀର ଧ୍ୟାନରେ ମଗ୍ନ ହୋଇ ଯାଉଥିଲେ । ଏତେ ଛୋଟ ବାଳିକାର ଏପରି ଭାବାବସ୍ଥା ଦେଖି ମାତା ମେନକା ତାଙ୍କୁ ଧ୍ୟାନସ୍ଥ ହେବାକୁ ବାରଣ କରୁଥିଲେ ଓ ସେଥିପାଇଁ ତାଙ୍କ ନାମ ଥିଲା "ଉମା" ।

ଦିନେ ନାରଦ ଆସି ହିମବାନଙ୍କ ପ୍ରାସାଦରେ ପହଞ୍ଚିଲେ । ପିତା ହିମବାନ୍ ପାର୍ବତୀଙ୍କୁ ଡାକିଲେ । ପାର୍ବତୀ ନାରଦଙ୍କୁ ନମସ୍କାର କଲେ । ହିମବାନ୍ ଝିଅକୁ ଆଦରରେ କୋଳରେ ବସାଇ ନାରଦଙ୍କୁ ପ୍ରଶ୍ନ କଲେ, "ଦେବର୍ଷି, ଆପଣ ତ ସର୍ବଜ୍ଞ, କୁହନ୍ତୁ ଦେଖି ମୋ ଝିଅର ସ୍ୱାମୀ କିଏ ହେବ ?"

ନାରଦ ପାର୍ବତୀଙ୍କ ହାତ ଦେଖି କହିଲେ, "ଆପଣଙ୍କ ଝିଅ ହାତରେ ମହାଶକ୍ତିଙ୍କର ଚିହ୍ନ



ଅଛୁ । ତା' ଯୋଗୁ ଆପଣଙ୍କର ଯଶ ବୃଦ୍ଧି ପାଇବ । ସେ ଲୋକମାନଙ୍କ ଦ୍ୱାରା ପୂଜା ପାଇବ । ଏକମାତ୍ର ଶିବହିଁ ଏହାର ଯୋଗ୍ୟ ପତି । ତେଣୁ କୌଣସି ଚିନ୍ତା ନ କରି ଏହାକୁ ଶିବଙ୍କ ହାତରେ ଅର୍ପଣ କରନ୍ତୁ ।"

ନାରଦ ଯିବା ପରେ ହିମବାନ୍ ପତ୍ନୀ ମେନକାଙ୍କୁ କହିଲେ, "ଆମେ ମହାଶକ୍ତିଙ୍କୁ ପ୍ରାର୍ଥନା କରିଥିଲେ କି ସେ ଆମର କନ୍ୟା ରୂପରେ ଜନ୍ମ ହୋଇ ଶିବଙ୍କୁ ବିବାହ କରନ୍ତୁ । ଏବେ ନାରଦଙ୍କ ଶୁଭ ବଚନ ତାହାହିଁ ପ୍ରମାଣିତ କରୁଛି ।"

ମେନକା ପ୍ରସନ୍ନ ହୋଇ କହିଲେ, "ଆମ ପାର୍ବତୀ ଏବେ ବିବାହ ଯୋଗ୍ୟ ହୋଇଗଲଣି । ତମେ ଶୀଘ୍ର ତା'ର ବିବାହର ବ୍ୟବସ୍ଥା କର ।"

ଏଣେ ଶିବ ସତୀଙ୍କ ପ୍ରାଣତ୍ୟାଗ ପରେ ତାଙ୍କର ପବିତ୍ର ଶରୀରକୁ ସ୍କନ୍ଧରେ ଧାରଣ କରି ସାରା ବିଶ୍ୱ ଘୂରି ବୁଲିଲେ । ଶିବ ବିନା ସଂସାର ଅଚଳ । ବିଷ୍ଣୁ ତାଙ୍କର ମାୟା ଦ୍ୱାରା ଶିବଙ୍କୁ ଆଚ୍ଛନ୍ନ କରି ନିଜ ଚକ୍ରରେ ସତୀଙ୍କ ଅଙ୍ଗ ସବୁ କାଟିବାକୁ ଲାଗିଲେ । ଯେଉଁଠି ସେହି ପବିତ୍ର ଦେହାବଶେଷ ସବୁ ପଡିଲା ତାହାହିଁ ମହାତୀର୍ଥ ରୂପେ ପରିଗଣିତ ହେଲା । ଶିବ ହିମାଳୟରେ ପହଞ୍ଚିବା ବେଳକୁ ଆଉ ସତୀଙ୍କ ଦେହ ଅବଶିଷ୍ଟ କିଛି ନଥାଏ । ଶୋକ ସନ୍ତପ୍ତ ଶିବ ସବୁ ଦୁଃଖ ଭୁଲିବା ପାଇଁ ଘୋର ତପସ୍ୟାରେ ମଗ୍ନ ରହିଲେ । ମଧ୍ୟେ ମଧ୍ୟେ ଭକ୍ତମାନଙ୍କୁ କଦବା କ୍ୱଚିତ୍ ସେ ଦେଖା ଦେଉଥା'ନ୍ତି ।

ହିମବାନ୍ ପ୍ରସ୍ତାବ କଲେ ପାର୍ବତୀ ଯାଇ ଧ୍ୟାନମଗ୍ନ ଶିବଙ୍କର ତତ୍ତ୍ୱ ନେବ ଓ ତାଙ୍କର ପରିଚର୍ଯ୍ୟା କରିବ । ପାର୍ବତୀ ଏକଥା ଶୁଣି ଖୁବ୍ ଖୁସି ହେଲେ । ତା'ପରେ ମେନକା ଓ ହିମବାନ୍ ଶିବଙ୍କୁ ଏ ପ୍ରସ୍ତାବ ଦେବାକୁ କୈଳାସକୁ ଗଲେ ।

ଶିବ ତପସ୍ୟାରେ ମଗ୍ନ ଥା'ନ୍ତି । ଶିବଙ୍କର ଗଣମାନେ ତାଙ୍କୁ ପହରା ଦେଉଥା'ନ୍ତି । ହିମବାନ୍ ଓ ମେନକାଙ୍କୁ ଦେଖି ରୁଦ୍ରଗଣ ତାଙ୍କୁ ଶିବଙ୍କ ନିକଟକୁ ଯିବାକୁ ଅନୁମତି ଦେଲେ । ହିମବାନ୍ ଓ ମେନକା ଶିବଙ୍କୁ



ସାଷ୍ଟାଙ୍ଗ ପ୍ରଣିପାତ କରି ଭକ୍ତିପୂର୍ବକ ପୁଷ୍ପାଞ୍ଜଳି ଅର୍ପଣ କଲେ । ତା'ପରେ ହାତ ଯୋଡ଼ି ଦୁହେଁ ଠିଆ ହୋଇ ରହିଲେ । ଶିବ ଆଖି ଖୋଲିଲେ ଓ ହିମବାନ୍‌ଙ୍କୁ କହିଲେ, "ହିମବାନ୍, ତୁମେ ଅତ୍ୟନ୍ତ ପବିତ୍ର ବୋଲି ମୁଁ ତୁମରି ଦେଶର କୈଳାସ ପର୍ବତକୁ ମୋର ତପସ୍ୟାର ଆସନ ଭାବରେ ବାଛି ନେଇଛି ।"

"ମହାତ୍ମା, ଆପଣ ଏଠାରେ ତପସ୍ୟା କରୁଛନ୍ତି, ଏହା ମୋ ପାଇଁ ବଡ଼ ସୌଭାଗ୍ୟର କଥା । ଏଠାରେ ଆପଣଙ୍କ ତପସ୍ୟା ପାଇଁ ଯେପରି କୌଣସି ପ୍ରକାର ବାଧାବିଘ୍ନ ନ ଆସେ, ସେଥିପାଇଁ ମୁଁ ସଦା ତତ୍ପର ।" ହିମବାନ୍ କହିଲେ ।

ଶିବ କହିଲେ, "ହିମବାନ୍, ତୁମ ଭକ୍ତିରେ ମୁଁ ଖୁବ୍ ପ୍ରସନ୍ନ ହୋଇଛି । କ'ଣ ବର ମାଗୁଛ ମାଗ ।"

"ପ୍ରଭୁ, ମୋର କନ୍ୟା ପାର୍ବତୀ ଆପଣଙ୍କର ସେବା କରିବା ପାଇଁ ଆଗ୍ରହ ପ୍ରକାଶ କରୁଛି । କୃପା କରି ଅନୁମତି ପ୍ରଦାନ କରନ୍ତୁ ।" ହିମବାନ୍ ପ୍ରାର୍ଥନା କରି କହିଲେ ।

"ସ୍ତ୍ରୀମାନେ ତପସ୍ୱୀର ପରିଚର୍ଯ୍ୟା କରିବା ତ ଉଚିତ୍ ହେବ ନାହିଁ । ଯଦି ତମେ ଗୃହୀ ତ ତମେ ଆସି ମୋର ସେବା ପରିଚର୍ଯ୍ୟା କରିପାର ।" ଶିବ କହିଲେ ।

"ମହାତ୍ମା, ମୋର କନ୍ୟା ପାର୍ବତୀ ସାଧାରଣ ଝିଅ ନୁହେଁ । ସ୍ୱୟଂ ମହାଶକ୍ତିଙ୍କ ବରଦାନରୁ ସେ ଜନ୍ମ ହୋଇଛି । ଆପଣଙ୍କ ପରି ବୈରାଗୀ ତପସ୍ୱୀଙ୍କର ତପସ୍ୟାରେ ତା'ପରି ସାଧ୍ୱୀ କେବେ ବିଘ୍ନ ଘଟାଇ ନ ପାରେ । ତେଣୁ ତା'ର ସେବା ଆପଣ ସ୍ୱୀକାର କରନ୍ତୁ ।" ହିମବାନ କହିଲେ ।

ଶିବ ହିମବାନଙ୍କ ପ୍ରାର୍ଥନା ସ୍ୱୀକାର କଲେ ।

ସତୀଦେବୀଙ୍କ ଦେହ ତ୍ୟାଗ ପରେ ଶିବ କୈଳାସ ଉପରେ ଗଭୀର ତପୋମଗ୍ନ ଥା'ନ୍ତି । ତପସ୍ୟାର ତେଜ ଯୋଗୁ ତାଙ୍କ ଲଲାଟରୁ ଘର୍ମ ବହିର୍ଗତ ହୋଇ ଗୋଟିଏ ବିନ୍ଦୁ ପୃଥିବୀ ଉପରେ ଝରି ପଡ଼ିଲା । ସେଇ ବିନ୍ଦୁରୁ ଉତ୍ପନ୍ନ ହେଲା ଏକ ପୁତ୍ର । ସେ ଥିଲା ଆଜାନୁବାହୁ । ତା'ର ଶରୀର ଥିଲା ସ୍ଥୂଳ ଓ ଗୌରବର୍ଣ୍ଣ ବିଶିଷ୍ଟ ।



ପୃଥିବୀ ମାତା ତାଙ୍କୁ କୋଳରେ ନେଇ ଶିବଙ୍କୁ ଦେଖାଇଲେ ।

ଶିବ ଭୂଦେବୀଙ୍କୁ କହିଲେ, "ତମେ ଧନ୍ୟ । ମୋର ଶରୀରନିର୍ଗତ ଘର୍ମ ବିନ୍ଦୁରୁ ଜାତ ଏହି ବାଳକ ତୁମ ଯୋଗୁ ଯଶସ୍ୱୀ ହେବ । ତା'ର ନାମ ହେବ ଭୌମ ।"

ଭୌମ କ୍ରମେ ବଡ଼ ହେଲା । ଘୋର ତପଶ୍ଚର୍ଯ୍ୟା କରିବା ଉଦ୍ଦେଶ୍ୟରେ ସେ କାଶୀରେ ପହଞ୍ଚିଲା ଓ ତପସ୍ୟା କଲା । ତା'ର ତପସ୍ୟାରେ ମୁଗ୍‌ଧ ହୋଇ ବିଶ୍ୱେଶ୍ୱର ତାକୁ ଗ୍ରହମଣ୍ଡଳରେ ସ୍ଥାନ ଦେଲେ ।

ଶିବଙ୍କ ତପସ୍ୟାକାଳରେହିଁ ଗଙ୍ଗା ପୃଥିବୀ ଉପରକୁ ଅବତରଣ କରିଥିଲେ । ଦେବୀ ଗଙ୍ଗାଙ୍କ ପ୍ରଥମ ବେଗକୁ ପୃଥିବୀ ଧାରଣ କରିପାରିବ ନାହିଁ ବୋଲି ଶିବ ତାଙ୍କୁ ଜଟାରେ ଧାରଣ କଲେ ଓ ପରେ ସେ ଧୀର ଗତିରେ ପୃଥିବୀ ଉପରେ ପ୍ରବାହିତ ହେବାକୁ ଲାଗିଲେ ।

ଏଣେ ଠିକ୍ ସେହି ସମୟରେ କଶ୍ୟପଙ୍କ ଦ୍ୱିତୀୟ ପତ୍ନୀ, ଦିତିଙ୍କ ଗର୍ଭରୁ ମହାଶକ୍ତିଶାଳୀ ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ ଦୁଇ ଦୈତ୍ୟ ଜନ୍ମ ନେଲେ । ସେମାନେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନିପୁରକୁ ଆକ୍ରମଣ କରି ସମସ୍ତଙ୍କୁ ପରାଜିତ କରି ଦଖଲ କଲେ । କି ମାନବ କି ଦେବତା ସମସ୍ତଙ୍କ ଉପରେ ଅକଥନୀୟ ଅତ୍ୟାଚାର କଲେ । ତେଣୁ ବାଧ୍ୟ ହୋଇ ଶ୍ରୀବିଷ୍ଣୁ ବରାହ ଓ ନୃସିଂହ ରୂପ ଧରି ତାଙ୍କୁ ମାରିଲେ । ଦିତି ପୁତ୍ରଶୋକରେ ବ୍ୟାକୁଳ ହେଲେ । ତେଣୁ ସେ ଶାନ୍ତ ହେବା ପାଇଁ କଶ୍ୟପଙ୍କ ଅନୁଗ୍ରହରୁ ପୁଣି ଗର୍ଭଧାରଣ କଲେ । ଇନ୍ଦ୍ର ବୁଝିପାରିଲେ ପୁଣି ଏକ ପ୍ରବଳ ପ୍ରତାପଶାଳୀ ଶତ୍ରୁ ଜନ୍ମ ହେବାକୁ ଯାଉଛି । ତେଣୁ ସେ ତାଙ୍କର ଅସ୍ତ୍ର ମହାବଜ୍ରକୁ ପଠାଇଲେ ଦିତିଙ୍କ ପେଟ ଭିତରେ ଛୁଆକୁ ମାରିବା ପାଇଁ । ବଜ୍ର ସେହି ଗର୍ଭସ୍ଥ ଶିଶୁକୁ ଅଣଚାଶ ଖଣ୍ଡ କରି କାଟି ପକାଇଲା ସିନା କିନ୍ତୁ ଜଣେ ପରିବର୍ତ୍ତେ ଅଣଚାଶ ଜଣ ଜୀବନ୍ତ ଶିଶୁ ସେଥିରୁ ରୂପ ନେଲେ । ସେମାନେ ପରେ ମରୁତ୍‌ଗଣ ରୂପରେ ବା ଅଣଚାଶ ବାୟୁ ରୂପରେ ଦେବତାଙ୍କ ସହ ଅବସ୍ଥାନ କଲେ ।



ଦିତି ପୁଣି ଦୁଃଖିତ ହେଲେ । ସେ ପୁଣି ଏକ ପୁତ୍ର ପ୍ରାର୍ଥନା କଲେ । ସ୍ୱାମୀ କଶ୍ୟପ କହିଲେ ଏଥର ବରଂ ସେ ବ୍ରହ୍ମାଙ୍କୁ ପ୍ରାର୍ଥନା କରନ୍ତୁ । ତାହାହିଁ ହେଲା । ବ୍ରହ୍ମାଙ୍କ ବର-ଦାନରୁ ଏକ ବଜ୍ରକାନ୍ତ ବିଶିଷ୍ଟ ଶିଶୁପୁତ୍ର ଦିତିଙ୍କଠାରୁ ଜନ୍ମ ନେଲା । ପିତାମାତା ତା'ର ନାମ ରଖିଲେ ବଜ୍ରାଙ୍ଗ ।

ବଜ୍ରାଙ୍ଗର ଜନ୍ମ ସଙ୍ଗେ ସଙ୍ଗେ ସାରା ପୃଥିବୀରେ ଉଲ୍‌କାପାତ ଓ ଭୂମିକମ୍ପ ଆଦି ପ୍ରାକୃତିକ ବିପର୍ଯ୍ୟୟମାନ ଦେଖା ଦେଲା । ଏସବୁ ଅଶୁଭ ସଙ୍କେତ ଦେଖି ଦେବତାମାନେ ଭୟଭୀତ ହେଲେ । ଦିତି ବଜ୍ରାଙ୍ଗକୁ ଅତି ଯତ୍ନରେ ଓ ଆଦରରେ ପାଳନ କଲେ ।

ଟିକିଏ ବଡ଼ ହୋଇଯିବା ପରେ ଦିନେ ସେ ପୁଅକୁ କହିଲେ, "ପୁଅ, ଦେବତାମାନେ ମୋତେ ବହୁତ ଦୁଃଖ ଦେଇଛନ୍ତି । ସେମାନେ ତୋର ବଡ଼ଭାଇମାନଙ୍କୁ ବଧ କରିଛନ୍ତି । ତେଣୁ ତୁ ଏହାର ପ୍ରତିଶୋଧ ନେବୁ ।"

ବଜ୍ରାଙ୍ଗର ଯୁବକ ବୟସ ହେବା ମାତ୍ରେ ସେ ଅସୁର ସେନା ସଂଗଠନ କଲା ଓ ଯୁଦ୍ଧ ଯାତ୍ରା କଲା । ମର୍ତ୍ତ୍ୟ ତ ସେ ଅଚିରେ ଦଖଲ କଲା । ତା'ପରେ ସ୍ୱର୍ଗପୁର ଦଖଲ କଲା ଓ ଇନ୍ଦ୍ରଙ୍କ ସିଂହାସନରେ ବସିଲା । ଏସବୁ ଶୁଣି ମାତା ଦିତି ଅତ୍ୟନ୍ତ ଆନନ୍ଦିତ ହେଲେ ।

ଅନେକ ଦେବତା ବନ୍ଦୀ ଥିଲେ । କେତେକ ଦେବତା ବ୍ରହ୍ମାଙ୍କ ପାଖରେ ପହଞ୍ଚି ନିଜର ପରାଜୟ ସମ୍ବାଦ ଦେଲେ । ବ୍ରହ୍ମା ପୁଣି କଶ୍ୟପଙ୍କୁ ସାଥିରେ ଧରି ବଜ୍ରାଙ୍ଗ ପାଖରେ ପହଞ୍ଚିଲେ । ପିତା କଶ୍ୟପ ଓ ବ୍ରହ୍ମା ଦୁହେଁ ଅନୁରୋଧ କଲେ ଇନ୍ଦ୍ରଙ୍କୁ ମୁକ୍ତ ଦେଇ ସ୍ୱର୍ଗ ରାଜ୍ୟ ସେମାନଙ୍କ ହାତରେ ଛାଡ଼ି ଦେବା ପାଇଁ ।

ଏହାର ଉତ୍ତରରେ ବଜ୍ରାଙ୍ଗ କହିଲା, "ମୁଁ ରାଜ୍ୟ ବା ସମ୍ପତ୍ତିର ଲୋଭରେ ଦେବତାଙ୍କ ସହ ଯୁଦ୍ଧ କରିନାହିଁ । ଇନ୍ଦ୍ର ଅତ୍ୟନ୍ତ ଦୁଷ୍ଟ ଓ ଅତ୍ୟାଚାରୀ । ମୋ ମା'ର ଗର୍ଭସ୍ଥ ଶିଶୁକୁ ବଜ୍ର ପେଷି କାଟିଛି ଓ ମୋ ମା' ମନରେ ଅନେକ ଦୁଃଖ ଦେଇଛି । ତେଣୁ ସେ ମୁକ୍ତ ପାଇବାର

ଯୋଗ୍ୟ ନୁହେଁ । ଆପଣମାନେ କହୁଛନ୍ତି ତେଣୁ ମୁଁ ତାଙ୍କୁ ମୁକ୍ତ କରି ଦେଉଛି ।”

ବଜ୍ରାଙ୍ଗର ନମ୍ରତା, ଭଦ୍ରତା ଓ ଇନ୍ଦ୍ର ପ୍ରତି ଦୟା ଦେଖି ବ୍ରହ୍ମା ଅତ୍ୟନ୍ତ ଖୁସି ହେଲେ ଓ ବଜ୍ରାଙ୍ଗକୁ ବର ମାଗିବାକୁ କହିଲେ ।

ବଜ୍ରାଙ୍ଗ ବ୍ରହ୍ମାଙ୍କୁ ନିବେଦନ କରି କହିଲା, “ପ୍ରଭୁ ମୁଁ କେବଳ ପରଂବ୍ରହ୍ମଙ୍କ ରୂପ ଦେଖିବାକୁ ଚାହେଁ; ଆଉ ପ୍ରାଣୀମାନଙ୍କ ପ୍ରତି ମୋ ହୃଦୟରେ ଯେପରି ସର୍ବଦା ଦୟା ବିରାଜମାନ କରିବ; ଏହି ଦୁଇଟି ବର ଦିଅନ୍ତୁ ।”

ବଜ୍ରାଙ୍ଗର କଥାରେ ବ୍ରହ୍ମା ଆହୁରି ଆନନ୍ଦିତ ହେଲେ ଓ ବଜ୍ରାଙ୍ଗ ସହ ବରାଙ୍ଗୀ ନାମକ ଏକ ସୁନ୍ଦରୀ ରାଜକନ୍ୟାର ବିବାହ କରାଇଲେ । ତା’ପରେ ବଜ୍ରାଙ୍ଗ ଶିବଭକ୍ତ ହୋଇ ଓ ସାତ୍ତ୍ୱିକ ଭାବସମ୍ପନ୍ନ ହୋଇ ନିଜ ରାଜ୍ୟକୁ ଲେଉଟି ଆସିଲା । ସର୍ବଦା ଈଶ୍ୱର ଆରାଧନା କରି ନିଜର ଜୀବନ ବିତାଇବାକୁ ଲାଗିଲା ।

କିଛିଦିନ ପରେ ସ୍ତ୍ରୀର ସେବା ଓ ପ୍ରେମରେ ପ୍ରସନ୍ନ ହୋଇ ସେ କହିଲା, “କିଛି ଇଚ୍ଛା ଥିଲେ ପ୍ରକାଶ କର, ଅବଶ୍ୟ ପୂର୍ଣ୍ଣ କରିବି ।”

ବରାଙ୍ଗୀ କହିଲା, “ଆପଣ ମୋ ଉପରେ ପ୍ରସନ୍ନ ହୋଇଛନ୍ତି ତ ଇନ୍ଦ୍ରାଦି ଦେବଗଣଙ୍କୁ ପରାଜିତ କରିପାରିବା ଭଳି ଏକ ଶକ୍ତିଶାଳୀ ପୁତ୍ର ମୋତେ ପ୍ରଦାନ କରନ୍ତୁ ।”

ପତ୍ନୀର ଏପରି କଥା ଶୁଣି ବଜ୍ରାଙ୍ଗ ଦୁଃଖିତ ହେଲା । କାରଣ ସେ ଜାଣିଥିଲା ଦେବତା-ମାନଙ୍କର ଶତ୍ରୁ ରୂପରେ ଯେଉଁ ଶିଶୁ ଜନ୍ମ ନେବ ଅଳ୍ପକାଳ ମଧ୍ୟରେ ବିଷ୍ଣୁ ତାଙ୍କୁ ସଂହାର କରିବେ । ତେଣୁ ଏପରି ଅଳ୍ପାୟୁ ପୁତ୍ରର କାମନା ବଜ୍ରାଙ୍ଗୀ କାହିଁକି କଲା ଏଇ କଥା ଭାବି ସେ ଦୁଃଖିତ ହେଲା । କିନ୍ତୁ କଥା ଦେଇଛି କ’ଣ ବା କରିବ । ଏହାର ପ୍ରତିକାର ପାଇଁ ସେ ବ୍ରହ୍ମାଙ୍କୁ ପାଇବା ପାଇଁ ଘୋର ତପସ୍ୟା ଆରମ୍ଭ କଲା ।





# ଏକ କ୍ରୀତଦାସର କାହାଣୀ

ଥରେ ଦୁଇବର୍ଷ ଧରି ବର୍ଷା ନ ହେବାରୁ ବସୋରା ନଗରୀ ଓ ଆଖପାଖର ସବୁ ଲୋକେ ପାଣି ବିନା ବହୁ କଷ୍ଟ ଭୋଗିଲେ ।

ସମସ୍ତ ପ୍ରକାର ଚେଷ୍ଟା କରାଗଲା । ଅନ୍ତତଃ ଆଶା ଥିଲା ଏଇ ବର୍ଷ ବରଷା ହେଲେ ଆଗିବର୍ଷମାନଙ୍କର ଦୁଃଖ ଦୂର ହୋଇଯିବ । କିନ୍ତୁ ସମସ୍ତଙ୍କ ଆଶା ଧୂଳିସାତ୍ ହୋଇଗଲା ଯେତେବେଳେ ସେମାନେ ଦେଖିଲେ କ୍ରମେ ବର୍ଷାଋତୁ ଶେଷ ହୋଇ ଆସୁଛି ଅଥଚ ଜମିବାଡ଼ି ଶୁଖି ଫାଟି ରହିଛି ।

ଏଇ ବିପଦ ସମୟରେ କେତେକ ଭକ୍ତ ମିଳି ମସଜିଦ୍ ପାଖରେ ଯାଇ ଗାଢରେ ପଢ଼ୁଥିଲେ ଓ ମଥା ଉଠାଇ ଆକାଶକୁ ଚାହିଁ ପ୍ରାର୍ଥନା କଲେ, "ହେ ଖୁଦା, ଆମ ଉପରେ ଦୟାକର । ବର୍ଷା ବିନା ଶସ୍ୟହାନି ହୋଇ ଦୁର୍ଭିକ୍ଷ ପଡିଲାଣି; ପିଇବାକୁ ପାଣି ଟୋପାଏ ମଧ୍ୟ ନାହିଁ । ଦୟାକରି ଟିକିଏ ବରଷା କର ।"

ଅଧରାତି ପର୍ଯ୍ୟନ୍ତ ଭକ୍ତମାନେ ଏହି ଭାବରେ ପ୍ରାର୍ଥନା କରି ଚାଲିଥା'ନ୍ତି । କିନ୍ତୁ ଆକାଶରେ ଛୋଟିଆ ବାଦଲଟିଏ ସୁଦ୍ଧା ଦେଖାଗଲା ନାହିଁ । ସେମାନେ ପ୍ରାର୍ଥନା କରି କରି କ୍ଳାନ୍ତ ହୋଇ ସେଠାରେ ଶୋଇଗଲେ । କିନ୍ତୁ ଜଣେ ଭକ୍ତ ଶୋଇ ନଥାଏ । ସେ ଦେଖିଲା ଟେହ୍ନ ନିଗଢ ରାତିରେ ଜଣେ ଶ୍ୟାମବର୍ଣ୍ଣର ଯୁବକ ନିକଟସ୍ଥ ଉଚ୍ଚସ୍ଥାନକୁ ଉଠିଗଲା ।

ଯୁବକଟି ଉଚ୍ଚ ସ୍ଥାନ ଉପରକୁ ଚଢ଼ିଯାଇ କିଛି ସମୟ ଚୁପ୍‌ଚାପ୍ ବସି ରହିଲା ଓ ତା'ପରେ ଉପରକୁ ମୁହଁ ଟେକି ଭଗବାନ୍‌ଙ୍କୁ ପ୍ରାର୍ଥନା କରି କହିଲା, "ହେ ଖୁଦା, ଏଇ ଭକ୍ତମାନଙ୍କ ପ୍ରାର୍ଥନା ଟିକିଏ ଶୁଣ । ମୁଁ ଜାଣେ ତମେ ମତେ ବହୁତ ଭଲପାଅ ।



ତେଣୁ ମୋ ପ୍ରାର୍ଥନା ଶୁଣ । ଶୀଘ୍ର ବରଷା କରାଅ ।"

ପ୍ରାର୍ଥନା ସମାପ୍ତ କରି ଯୁବକଟି ତଳକୁ ଓହ୍ଲାଇ ଆସିଲା । ସେ ଯିବାକୁ ବାହାରିଛି ଏଇ ସମୟରେ ତଳେ ରହିଥିବା ଭକ୍ତଟି ତା' ପାଖକୁ ଯାଇ କହିଲା, "ତମେ କିଏ ?"

"ମୁଁ ଜଣେ କ୍ରୀତଦାସ ।"

ଯୁବକର ମୁହଁରୁ ଏପରି କଥା ଶୁଣି ଭକ୍ତ କହିଲା, "ତୁ ତ ବହୁତ ଗର୍ବୀ । ତୁ କିପରି ଜାଣିଲୁ କି ଖୁଦା ତୋତେ ଭଲପା'ନ୍ତି ? ବଡ଼ ବଡ଼ ଭକ୍ତମାନଙ୍କୁ ପ୍ରାର୍ଥନାର ଉତ୍ତର ଯେଉଁଠି ଖୁଦା ଦେଉନାହାନ୍ତି ସେଠାରେ ତୁ କିପରି ଗର୍ବର ସହିତ କହୁଛୁ କି ସେ ତୋତେ ଭଲପାନ୍ତି ।"

ଭକ୍ତଙ୍କ କଥା ଶୁଣି କ୍ରୀତଦାସ ଯୁବକଟି କିଛି ସମୟ ଚୁପ୍ ହୋଇ ରହିଲା ଓ ତା'ପରେ କହିଲା, "ଯଦି ଖୁଦା ମୋତେ ଭଲ ନ ପା'ନ୍ତେ ତେବେ ଖୁଦା ଅଛନ୍ତି ବୋଲି ମୁଁ ଜାଣନ୍ତି କିପରି ? ପୁଣି ସେ ଯେ କୃପାମୟ ଯେକଥା କିପରି ମୁଁ ଦୃଢ଼ବିଶ୍ୱାସର ସହିତ କହନ୍ତି ?" ଏତିକି କହି ସେ ଟିକିଏ ଆଗକୁ ଚାଲିଲା । ଅଳ୍ପ ବାଟ ଯାଇ ପୁଣି ରହିଯାଇ କହିଲା, "ଉଇ ଆକାଶକୁ ଦେଖ । ତମେହିଁ ଜାଣିପାରିବ ଯେ ଖୁଦା ମୋତେ ଭଲପାନ୍ତି ନା ନାହିଁ ।"

ଭକ୍ତଟି ଆକାଶକୁ ଚାହିଁ ଦେଖିଲା ହଠାତ୍ କୁଆଡୁ ଶ୍ୟାମ ବର୍ଣ୍ଣର ବାଦଲ ସବୁ ଆକାଶ ପୂର୍ଣ୍ଣ କରି ଘୋଟି ଆସିଛି । ସେ ମଥା ତଳକୁ କରିବା ଆଗରୁହିଁ ମୂଷଳଧାରରେ ବର୍ଷା ପଡ଼ିବାକୁ ଲାଗିଲା ।

ଭକ୍ତଟି ସେଇ ଯୁବକକୁ ବହୁତ ଖୋଜିଲା । କିନ୍ତୁ ପାଇଲା ନାହିଁ । ଭକ୍ତମାନେ ବର୍ଷାରେ ଓଦା ହୋଇ ମସଜିଦ୍ ଭିତରକୁ ଚାଲିଗଲେ । କୂଅ ପୋଖରୀ ସବୁ ପାଣିରେ ପୂର୍ଣ୍ଣ ହେଲା । ନଗରର ଲୋକମାନଙ୍କ ଖୁସିର ସୀମା ନାହିଁ ।

ସେଦିନ ରାତିରେ ମସଜିଦ୍‌ରେ ପ୍ରାର୍ଥନା ସମୟରେ ଭକ୍ତଟି ସେଇ ଯୁବକର ଖୋଜ୍ ନେଲା ହେଲେ କେଉଁଠି ପାଇଲା ନାହିଁ । ପରଦିନ ସବୁ ଭକ୍ତ ମିଶି କ୍ରୀତଦାସ ବ୍ୟବସାୟୀ ପାଖକୁ ଗଲେ ଓ ପଚାରିଲେ, "କ'ଣ କୌଣସି କ୍ରୀତଦାସକୁ ବିକି କରିବ ?"

"ଜଣେ କାହିଁକି ? ବନ୍ଦି ପାଇଁ କୋଡ଼ିଏ କ୍ରୀତଦାସ ନେଇ ଆସିଛୁ ।" ବ୍ୟବସାୟୀ କହିଲା ।

ଭକ୍ତମାନେ ଯାଇ ଦେଖିଲେ, ହେଲେ ସେଇ ଯୁବକଟିକୁ ସେମାନେ ଦେଖିବାକୁ ପାଇଲେ ନାହିଁ । ସେମାନେ ନିରାଶ ହୋଇ ଫେରି ଆସିବା ସମୟରେ ଦେଖିଲେ ଜଣେ ଯୁବକ ଗୋଟିଏ କଣରେ କାନ୍ଥ ପଟକୁ ମୁହଁ ରଖି ଚୁପ୍‌ଚାପ୍ ବସିଛି । ପୂର୍ବୋକ୍ତ ଭକ୍ତଟି ଚିହ୍ନି ପାରିଲା ଯେ ସେଇହିଁ ସେଇ ଯୁବକ । ଭକ୍ତ ଯାଇ ତା'ପାଖରେ ପହଞ୍ଚିଲା । ବ୍ୟବସାୟୀ ତାକୁ ଉଠି ଠିଆ ହେବାକୁ ଆଦେଶ ଦେଲା ।

"ଆମେ ଏଇ ଯୁବକଟିକୁ କିଣିବାକୁ ଚାହୁଁ ।" ଭକ୍ତମାନେ ଇଚ୍ଛା ପ୍ରକାଶ କଲେ ।

ବ୍ୟବସାୟୀ ଆଶ୍ଚର୍ଯ୍ୟ ହୋଇ ମୁହଁ ଫେରାଇ ସେମାନଙ୍କ ମୁହଁକୁ ଅନାଇଲା । ତା'ପରେ କହିଲା, "ଦେଖନ୍ତୁ, ମୁଁ ଜଣେ ନୀତିବାନ୍ ଲୋକ ହୋଇ କପରି ଆପଣଙ୍କଠାରୁ ପଇସା ନେଇ ପାଗଳଟାକୁ ବିକିବି ? ଆପଣଙ୍କର ଦରକାର ହେଲେ ମୁଁ ବହୁତ ଭଲ କ୍ରୀତଦାସଟିଏ ବାଛି ଦେଇପାରେ ।"

"ଆମେ ଏଇ କ୍ରୀତଦାସକୁହିଁ ଚାହୁଁ ।"

ବ୍ୟବସାୟୀ ଅଳ୍ପ ହସି ସାମାନ୍ୟ କିଛି ମୂଲ୍ୟର ବିନିମୟରେ ତାକୁ ବିକି ଦେଲା ।

ଭକ୍ତମାନେ ତାକୁ ସାଙ୍ଗରେ ନେଇ ରାସ୍ତା ଉପରକୁ ଉଠି ଆସିଲେ । ସେ ହାତଯୋଡ଼ି ଭକ୍ତମାନଙ୍କୁ କହିଲା, "ହେ ମୋର ମାଲିକ-ମାନେ, କୁହନ୍ତୁ ମୁଁ କି ସେବା କରି ପାରିବି ?"



"ବରଂ ତମେ ଆମମାନଙ୍କୁ ଆଜ୍ଞା ଦଅ । ତମେହିଁ ଆମର ମାଲିକ । ତମେ ଖୁଦାଙ୍କର କେତେ ପ୍ରିୟ ଓ କେତେ ନିକର ସେ କଥା ଆମେ ଜାଣୁ ।" ଭକ୍ତମାନେ କହିଲେ ।

କ୍ରୀତଦାସଟି ନିର୍ବୀହ ଆଖିରେ କେବଳ ସେମାନଙ୍କ ମୁହଁକୁ ଚୃହିଁ ରହିଲା ଓ ଅଳ୍ପ ହସିଲା । ସଭାରେ ଯେଉଁ ଭକ୍ତ ତାକୁ ଦେଖିଥିଲା ସେ ଆଗକୁ ଆସି କହିଲା, "କ'ଣ ତମେ ମୋତେ ଚିହ୍ନି ପାରୁନାହିଁ ? ତମେ ସେଦିନ ସଭାରେ ପ୍ରାର୍ଥନା କଲା ପରେ ମୋ ସହିତ କଥା ହୋଇଥିଲ । ଏବେ ଚିହ୍ନିଲ ?"

"ଓଃ, ଏମିତି କଥା ।" ଏତିକି କହି ସେ ପୁଣି ନିର୍ବୀହ ଆଖିରେ ସମସ୍ତିଙ୍କ ମୁହଁକୁ ଚୃହିଁଲା । ତା'ପରେ କହିଲା, "ସଭା କଥା ମୋର କିଛି ମନେ ନାହିଁ । ଯାହା ହେଉ ଦୟାକରି ମୋତେ ଥରେ ଅନୁମତି ଦିଅନ୍ତୁ ମୁଁ ମସଜିଦ୍‌ରେ ଯାଇ ପ୍ରାର୍ଥନା କରେ ।"

"ନିଶ୍ଚୟ, ନିଶ୍ଚୟ ଯିବ । ଆମେ ତ ଏବେ ତୁମର ଦାସ ।" ଭକ୍ତମାନେ କହିଲେ ।

ଯୁବକଟି ମସ୍‌ଜିଦ୍ ଭିତରେ ପଶିଥିଲା । ତା'ପରେ ଆଣ୍ଠୁ ମାଡ଼ି ପ୍ରାର୍ଥନା କଲା, "ହେ ଖୁଦା, ମୋ ପ୍ରତି ଆପଣଙ୍କର ଯେଉଁ ପ୍ରେମ ତାହାର ରହସ୍ୟ ତ ସମସ୍ତେ ଜାଣିନେଲେ । ଏବେ ଏମାନେ ଏକଥା ପ୍ରଚାର କରିବେ ଓ ଭବିଷ୍ୟତରେ ଅନେକ ଲୋକ ମୋର ଚତୁର୍ଦ୍ଦିଗରେ ଜମା ହେବେ ଓ ମୋର ଆଦର ସତ୍କାର କରିବେ । ଆପଣଙ୍କ ସହିତ ଏକେଲା ରହିବାରେ ଯେଉଁ ଆନନ୍ଦ ମିଳୁଥିଲା, ସେଇଟା ଗଲା । ଆପଣ ଦୟାକରି ମୋତେ ନିଜ ପାଖକୁ ନେଇଯା'ନ୍ତୁ ।"

ଏହାପରେ ସେ କିଛି ସମୟ ସେହି ଏକ ସ୍ଥାନରେ ନିଶ୍ଚଳ ଭାବରେ ବସି ରହିଲା । ଭକ୍ତମାନେ ତାଙ୍କୁ ଅପେକ୍ଷା କରୁଥିଲେ । ଶେଷରେ ଜଣେ ଯାଇ ତା'ର କାନ୍ଧରେ ହାତ ରଖି ଦେଖିଲା ଯେ ଅନେକବେଳୁ ତା' ଦେହ ଥଣ୍ଡା ହୋଇ ଯାଇଛି ।



# କାହାର କେତେ ଆୟୁ

ଅଷ୍ଟାଦଶ ଶତାବ୍ଦୀରେ କ୍ୟାପ୍ଟେନ୍ ଜେମ୍ସ୍ କୁକ୍ ଥିଲେ ଜଣେ ସାହସୀ ନାବିକ । ସେ ୧୭୭୩ ରେ ଦକ୍ଷିଣ ପ୍ରଶାନ୍ତ ମହାସାଗରର ଏକ ଦ୍ୱୀପରେ ପହଞ୍ଚି ମୈତ୍ରୀର ଚିହ୍ନ ସ୍ୱରୂପ ଗୋଟିଏ କଚ୍ଛପ ସେଇ ଦ୍ୱୀପର ରାଜାଙ୍କୁ ଭେଟି ଦେଲେ । ସେଠାକାର ଲୋକେ ସେଇ କଚ୍ଛପର ନାମ ରଖିଲେ ଠୁଇ ମଲେଲା । ସେ ସେଠାରେ ଏବେ ୧୯୬୬ ମସିହାରେ ପ୍ରାୟ ୨୦୦ ବର୍ଷ ବୟସରେ ମରିଗଲା ।

ମନୁଷ୍ୟର ଆୟୁ ଖୁବ୍ ବେଶିରେ ୧୧୦ ବର୍ଷ ପର୍ଯ୍ୟନ୍ତ ହୋଇଥାଏ । କେତେକ ପଶୁର ମଣିଷଙ୍କ ପରି ସମାନ ଆୟୁ । ଏକପ୍ରକାର କଇଁଛ ୧୫୨ ବର୍ଷ ପର୍ଯ୍ୟନ୍ତ ଜୀବିତ ରହେ ।

ପକ୍ଷୀମାନଙ୍କର ଆୟୁ ପଶୁଙ୍କଠାରୁ ଅପେକ୍ଷାକୃତ କମ୍ । ତଥାପି ଅଷ୍ଟ୍ରେଲିଆରେ ରହୁଥିବା ଏକପ୍ରକାର ତୋତା ପକ୍ଷୀ ୭୭ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିବାର ଦେଖା ଯାଇଛି । ଏକପ୍ରକାର ବଣୁଆ ହୁଡୁଡ଼ା ଜାତୀୟ ପକ୍ଷୀ ୬୨ ବର୍ଷ ବଞ୍ଚିବାର ଦେଖାଯାଇଛି । ବାଜପକ୍ଷୀ ୩୨ ବର୍ଷ, ସାମୁଦ୍ରିକ କାଉ ୩୬ ବର୍ଷ, ଗୃଦ୍ଧ ୨୧ ବର୍ଷ ଓ ନାଲ ବର୍ଣ୍ଣର କଣ୍ଠଥିବା ଏକ ଛୋଟପକ୍ଷୀ ୫ ବର୍ଷ ପର୍ଯ୍ୟନ୍ତ ଜୀବିତ ଥାଏ । କୌଣସି କୌଣସି ମାଛ ୧୫୦ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥା'ନ୍ତି ।

ତୁଳନା କରାଯାଇ ଦେଖା ଯାଇଛି ସ୍ତନ୍ୟପାୟୀ ପଶୁମାନଙ୍କର ଆୟୁ ଅପେକ୍ଷାକୃତ କମ୍ । ଘୋଡ଼ା ୬୨ ବର୍ଷ ଓ ହାତୀ ୫୦ ବର୍ଷ ଜୀବିତ ରହେ । ବେଳେ ବେଳେ ହାତୀମାନେ ୮୦ ବର୍ଷ ପର୍ଯ୍ୟନ୍ତ ମଧ୍ୟ ଜୀବିତ ଥା'ନ୍ତି ।





# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଜୁଲାଇ ୧୯୮୫ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



M. Natarajan

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ମେ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର। ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ। ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ମାର୍ଚ୍ଚ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : କୁଟୀର ଶିଳ୍ପରେ ଆଗୁଆ ହୋଇବୁ ଖଜୁରୀ ରସରୁ କରିବୁ ଗୁଡ଼ !

ଦ୍ୱିତୀୟ ଚିତ୍ର : କୃଷକର ମୂର୍ତ୍ତି ରହିବ ଉଚ୍ଚରେ ଜଗତରେ ସିଏ ଅଟଇ ବଡ଼ !!

ପୁରସ୍କାର ବିଜୟିନୀ : ସ୍ମିତା ଦାଶ, ଅରଙ୍ଗାବାଦ, କଟକ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

ଗୋଟିଏ ବ୍ରଣ ଉଠିଲେ, ଗୋଟି ଗୋଟି ହୋଇ ଅନେକ ବ୍ରଣ ଉଠେ,
ସେଇଥିପାଇଁ ଆପଣଙ୍କର ଦରକାର ନୂଆ ଉନ୍ନତ କ୍ଲିଅରେସିଲ୍‌ର ବିଶେଷ ଉପଚାର

# ନୂଆ ଉନ୍ନତ
# କ୍ଲିଅରେସିଲ

ଆଣ୍ଟି-ବ୍ୟାକ୍ଟେରିୟାଲ ଟ୍ରାଇକ୍ଲୋସାନ ଯୁକ୍ତ

## ବ୍ରଣସବୁ ସଫା କରିଦିଏ
## ଆଉ ନୂଆ
## ବ୍ରଣ ଉଠିବାକୁ ଦିଏ ନାହିଁ



ବୟସ ବଢ଼ିବା ସଙ୍ଗେ ସଙ୍ଗେ ବ୍ରଣ ଉଠିଥାଏ, ଏହା ସ୍ୱାଭାବିକ । କିଶୋର ବୟସରେ ବ୍ରଣ ଉଠିଥାଏ ଓ ଲିଭି ଯାଉଥାଏ । ତେବେ ତାକୁ ଅବହେଳା କଲେ କିମ୍ବା ସେଥିପାଇଁ ବ୍ୟସ୍ତ ହୋଇପଡ଼ିଲେ ବ୍ରଣ ଯେ ଶୁଖିଯିବ ତା ନୁହେଁ । ଆଉ ମଧ୍ୟ ନଖରେ ଚିପି କିମ୍ବା ବାହାର କରିଦେଲେ ଯେ କଥା ସରିଗଲା ତା ବି ନୁହେଁ । ଫଳ ହୁଏ, ସଂକ୍ରମଣ ବଢ଼େ ଓ ବେଶୀ ବେଶୀ ବ୍ରଣ ହୁଏ ।

**ଟ୍ରାଇକ୍ଲୋସାନ ଯୁକ୍ତ ନୂଆ ଉନ୍ନତ କ୍ଲିଅରେସିଲ ଫଳପ୍ରଦ ଭାବେ ବ୍ରଣ ସମସ୍ୟାର ସମାଧାନ କରିଦେବା ପାଇଁ ଅତି ଉପଯୁକ୍ତ, କାହିଁକି ?**

କାରଣ, ନୂଆ ଉନ୍ନତ କ୍ଲିଅରେସିଲ କେବଳ ଯେ ବ୍ରଣସବୁ ସଫା କରିଦିଏ ତା ନୁହେଁ, ନୂଆ ବ୍ରଣ ନ କରେଇ ଦେବାରେ ମଧ୍ୟ ସାହାଯ୍ୟ କରେ । କାରଣ ଏଥିରେ ଅଛି ଏକ ବିଶେଷ ଆଣ୍ଟି-ବ୍ୟାକ୍ଟେରିୟାଲ ଔଷଧତତ୍ତ୍ୱ—ଟ୍ରାଇକ୍ଲୋସାନ । ଟ୍ରାଇକ୍ଲୋସାନଯୁକ୍ତ ନୂଆ ଉନ୍ନତ କ୍ଲିଅରେସିଲ ବ୍ରଣ କରଉଥିବା ଜୀବାଣୁର ବୃଦ୍ଧି ବନ୍ଦ କରେ ଓ ତ୍ୱଚାର ଅକ୍ଷତ ଅଂଶକୁ ସଂକ୍ରମଣରୁ ସୁରକ୍ଷିତ ରଖେ । ତେଣୁ ଆପଣଙ୍କର ବ୍ରଣ ଆଉ ମାଡ଼ିପାରେ ନାହିଁ ।

**ନୂଆ ଉନ୍ନତ କ୍ଲିଅରେସିଲରୁ ସର୍ବୋତ୍କୃଷ୍ଟ ଫଳ ପାଇବେ କିପରି?**

ପ୍ରଥମେ ମୁହଁ ଧୋଇ ନିଅନ୍ତୁ । ତା ପରେ ମୁହଁ ସାରା ନୂଆ ଉନ୍ନତ କ୍ଲିଅରେସିଲ ଲଗାନ୍ତୁ । ବ୍ରଣ ଉପରେ ଟିକେ ବେଶୀ କରି ଲଗାନ୍ତୁ ।

ସର୍ବୋତ୍କୃଷ୍ଟ ଫଳ ପାଇବା ପାଇଁ, ନିୟମିତଭାବେ ଦିନକୁ ଅନ୍ତତଃ ଦୁଇଥର ନୂଆ ଉନ୍ନତ କ୍ଲିଅରେସିଲ ଲଗାନ୍ତୁ— ସକାଳେ ଓ ରାତିରେ । ଏହାକୁ ଉତ୍ତମ ଭାବରେ ଲଗାନ୍ତୁ ।

**ଟ୍ରାଇକ୍ଲୋସାନ ଯୁକ୍ତ ନୂଆ ଉନ୍ନତ କ୍ଲିଅରେସିଲ ଅପୂର୍ବ ରୂପେ ୩ ଭାବରେ କାର୍ଯ୍ୟ କରେ—**



**ବ୍ରଣ ସବୁ ଖୋଲିଦିଏ**
ବିଶେଷ ଔଷଧତତ୍ତ୍ୱ ବ୍ରଣ ଖୋଲାପାଇବାରେ ସାହାଯ୍ୟ କରେ



**ଜୀବାଣୁର ପ୍ରତିରୋଧ କରେ**
ଏହାର ଆଣ୍ଟି-ବ୍ୟାକ୍ଟେରିୟାଲ କ୍ରିୟା, ବ୍ରଣ କରଉଥିବା ଓ ମଇଳା କରୁଥିବା ଜୀବାଣୁର ପ୍ରତିରୋଧ କରେ



**ବ୍ରଣସବୁ ଶୁଖେଇ ଦିଏ**
ମାତ୍ରାଧିକ ତେଲକୁ ଶୋଷିନେଇ ବ୍ରଣସବୁ ଶୁଖେଇ ଦେବାରେ ସାହାଯ୍ୟ କରେ

ନୂଆ ଉନ୍ନତ କ୍ଲିଅରେସିଲ, ଚାଳକୁଣ୍ଡିଗୁଡ଼ିକୁ ମଧ୍ୟ ନରମ କରିଦେଇ ଢିଲା କରିଦେଇ ପାରେ ।




ଆଉ ମଧ୍ୟ ପାଇବେ:
କ୍ଲିଅରେସିଲ ଭ୍ୟାନିଶିଙ୍ଗ ଔଷଧ

OBM/3556 ORI

# ସତେଜତାର ଅନୁଭୂତି ପାଇଁ ପ୍ରେମ୍

ଆପଣଙ୍କ ମନପ୍ରାଣରେ କୋମଳ ସ୍ପର୍ଶ
ବୁଲାଇ ଦେବ ଏହି ସାବୁନ...
ଏହାର ସୁଗନ୍ଧ ବହୁ ସମୟ ଧରି ଆପଣଙ୍କୁ ଘେରି ରହେ।
ଅପୂର୍ବ ଏହାର ଫେଣ ଛନ ଛନ ହୋଇ ଭରି ଉଠେ।
ଅଭ୍ୟାସ କରି ପ୍ରତିଦିନ ବ୍ୟବହାର କରନ୍ତୁ ପ୍ରେମ।




ଗୋଲାପୀ ଓ
ସବୁଜ ରଙ୍ଗରେ
ଉପଲବ୍ଧ।




Imageads 2005 Ori



ଜୟଲକ୍ଷ୍ମୀ
ଉତ୍ପାଦନ
ଗୁଣ୍ଟୁର

# ମାଲ୍‌ଟୋଭା ଦଳ ଭ୍ରମଣରେ ବାହାରିଲେ ପାହାଡ଼କୁ

ସତରେ ଛୁଟି ଆରମ୍ଭ କରିବାଟାହିଁ କି ମଜାର କଥା । ପୁଣ ଦଳଟାଯାକ ଠିକ କଲେ ହାଇକିଙ୍ଗରେ ଯିବେ ବନ୍ଧେ ପାଖ କରନାଲା ଦୁର୍ଗକୁ । ଦିପହରର ଖାଇବା ପିଇବାର ଭାର ରହିଲା ତାବୁ ଆଉ ମାଳତିଙ୍କ ଉପରେ—ସାଣ୍ଡଉଇଚ, ଆପଲ, ବିସ୍କୁଟ । ଆଉ ଗୋଟାଏ ବଡ଼ ଫ୍ଲାସ୍କରେ ପୁଣ ଭର୍ତ୍ତି ମାଲଟୋଭା ।

**ମିନ ହଜିଗଲା ...**

ଦଳ ବାହାରି ପଡ଼ିଲେ ଭୋର ହେଉ ହେଉ.....ଘଣ୍ଟାଏ କଣ୍ଟାଏ ଯାଇ ପହଞ୍ଚିଗଲେ କରନାଲା ପକ୍ଷୀ ଅଭୟାରଣ୍ୟରେ ।
ଏଥର ପ୍ରାତଃ ଭୋଜନଟା ସାରି ନିଆଯାଉ । ତାପରେ ଚଟପଟ କପେ ମାଲଟୋଭା ପିଇନେଇ ଚାଲିଲେ ଆଗକୁ । ଏଥର ଉପରକୁ, ଉପରକୁ, ଆହୁରି ଉପରକୁ । ଛୋଟ ମିନି ଡରଡର ହୋଇ ଚାଲିଥାଏ ଆଗରେ ।
ହଠାତ ଦେଖିଲା ବେଳକୁ ମିନି ଅନ୍ତର୍ଦ୍ଧାନ । କୁଆଡେ଼ ଗଲା ? ସମସ୍ତେ ବ୍ୟସ୍ତ ।
ମନେହେଲା ସୂର୍ଯ୍ୟ ଯେମିତି ଚାଲିଗଲେ ମେଘ ପଛକୁ.... ହଠାତ ଦେଖାଗଲା ଆଖି ଆଗରେ ରହିଛି ସେହି କୌତୁକିଆ କୁହୁକ ହାତୀ ।
ବାଳ ଅଳସ, ଡରଡରୁଆ ମିନିର ହାତ ଧରି ଆଣେଇ ଆସିଲା ସେ । ମିନି ବଣ ଫୁଲ ଖୋଜିବାକୁ ଯାଇ ବାଟ ଭୁଲିଯାଇଥିଲା ।

"ଦେଖ ମିନି, ଫେର ଆଉ କେବେ ଯଦି ତୁ ଏମିତି କରୁନା.....କେବେ ଆଉ ତୋତେ ହାଇକିଙ୍ଗରେ ଆଣିବୁ ନାହିଁ" ତାବୁ ରାଗି କରି କହିଲା । ବେଣ୍ଟୁ ଅଉ ଝଲିମ କହିଲେ "ହେଲାଣି, ଏଥର ସେ ଭଲ ଶିକ୍ଷା ପାଇଛି । ଚାଲ ଯିବା ।"

**ସତରେ କି ସୁନ୍ଦର, ଚମତ୍କାର ଦିନଟି**

ମଉଜଭ୍ରମଣଟା ସତରେ ମାତବର ହୋଇଉଠିଲା ଦୁର୍ଗରେ । ପୁଲିସ ଓ ଚୋର ଖେଳରେ ଲାଗିଗଲେ ଦଳର ସମସ୍ତେ ।
ଏଥର ଘରକୁ ଫେରିବାର ସମୟ ।
ତେବେ ଆଗ କଥା ଅଗ: ପ୍ରତ୍ୟେକଙ୍କପାଇଁ କପେ କପେ ଗରମ ଗରମ ତୃପ୍ତିଦାୟକ ମାଲଟୋଭା । ତାବୁ ମିନିକୁ କହିଲା "ଦେଖ ମିନି, ପାଖେ ପାଖେ ରହିବୁ, କୁଆଡେ଼ ଯେମିତି ଉଭାନ ନ ହେଇ ଯାଉ ।"
ପାହାଡ଼ ତଳକୁ ଗଡ଼ି ଆସିଲେ ସେମାନେ । ମୁହଁରେ ଗୀତ, ମନରେ ଖୁସି ।

**ମାଲଟୋଭାହିଁ ପାର୍ଥକ୍ୟ ଆଣିଦିଏ**

ବାସ୍ତବିକ, ମାଲଟୋଭା ପିଉଥିବା ପିଲାମାନେ ହିଁ ପାଆନ୍ତି ଜୀବନର ସାର ଜିନିଷ ଯାହାକି ଅପରିହାର୍ଯ୍ୟ ।
କାରଣ ପ୍ରତିଟି କପ ମାଲଟୋଭାରେ ରହିଛି ପୁନେଲି ଗହମ, ବାର୍ଲି, ଖାଣ୍ଟି ଦୁଧ, ସମୃଦ୍ଧ କୋକୋ ଓ ତିନିର ସବୁ ଉପାଦାନ ।
ଏହା ଶରୀରରେ ଅଧିକ ଭଲଭାବେ ପ୍ରତିରୋଧକ ଶକ୍ତି ବଢ଼ିାଇଦିଏ । ବେଶୀ ଶକ୍ତି ଦିଏ—ବେଶୀ ଷ୍ଟାମିନା ଦିଏ ।
ଆପଣଙ୍କ ପିଲାମାନଙ୍କୁ ଦିଅନ୍ତୁ ମାଲଟୋଭା ।
ଆପଣ ଦେଖିବେ ଆପଣଙ୍କ ଆଗରେ ସେମାନେ ବଢ଼ି ଚାଲିଛନ୍ତି ସୁସ୍ଥ, ସବଳ ହୋଇ । ମାଲଟୋଭା ଆପଣଙ୍କ ପିଲାମାନଙ୍କୁ ସବୁବେଳେ ପ୍ରାଣୋଚ୍ଛଳ କରି ରଖେ ।

**ମାଲଟୋଭା କ୍ଲବରେ ଯୋଗଦିଅନ୍ତୁ**

ଏହା ଅତି ସହଜ । ଆପଣ ଏତିକି କରନ୍ତୁ—ଗୋଟି ୫୦୦ ଗ୍ରାମ ଜାରର ଲେବଲ ଓ ଭିତର ସୀଲ କିମ୍ବା ତିନୋଟି ୫୦୦ ଗ୍ରାମ ରିଫିଲ ପ୍ୟାକ୍‌ର ଉପର ଫ୍ଲାପ ପଠାନ୍ତୁ ଏହି ଠିକଣାରେ
ଦି ମାଲଟୋଭା କ୍ଲବ, ୪ ମହଲା,
ଭଣ୍ଡାରୀ ହାଉସ, ୯୧, ନେହରୁ ପ୍ଲେସ,
ନୂଆ ଦିଲ୍ଲୀ ୧୧୦ ୦୧୯ ।
ଆଉ ଆପଣ ହୋଇଗଲେ ଦଳର ।




JIL ଜଟଜୀଭ ଇଣ୍ଡଷ୍ଟ୍ରୀଜ ଲିମିଟେଡ

## ଭିଟାମିନରେ ଭରପୁର ମାଲ୍‌ଟୋଭା: ସ୍ୱାସ୍ଥ୍ୟ, ବଳ ଓ ଶକ୍ତିଦାୟକ

SIMOES/JIL/001/85 ORI